# ହଜି ଯାଇଥିବା ମଣିଷ

**ନାଟ୍ୟକାର :**
ଆନନ୍ଦ ଚନ୍ଦ୍ର ପଣ୍ଡି

୦

**ପ୍ରଥମ ପ୍ରକାଶ :**
୧୯୯୬
**ପ୍ରକାଶିକା :**
ଅରୁନ୍ଧତୀ ପଣ୍ଡି
ଘରନଂ-ଇ-୧୭୯, ୟୁନିଟ୍-ଆଠ
ଭୁବନେଶ୍ୱର, ପିନ-୭୫୧୦୧୨

୦

**ମୁଦ୍ରଣ :**
ଶ୍ରୀନିଶାମଣି ପ୍ରେସ,
ପ୍ଲଟ ନଂ-୧୨୫୫
ଡୁମୁଡୁମା, ଭୁବନେଶ୍ୱର

୦

**ପ୍ରଚ୍ଛଦ :**
ଅଧ୍ୟାପକ ବଳଦେବ ମହାରଥୀ
**ମୂଲ୍ୟ :**
ଅଠେଇଶ ଟଙ୍କା ମାତ୍ର (ଶୋଭନ)

୦

**ପ୍ରାପ୍ତିସ୍ଥାନ :**

- ଗ୍ରନ୍ଥାଳୟ, ପୂଜାମାର୍କେଟ୍, ଭୁବନେଶ୍ୱର
- ଓଡ଼ିଶା ଲେଖକ ସମବାୟ ସମିତି, ଭୁବନେଶ୍ୱର
- କ୍ୟାପିଟାଲ ଷ୍ଟୁଡେଣ୍ଟସ୍ ଷ୍ଟୋର, ଅଶୋକ ନଗର, ଭୁବନେଶ୍ୱର
- ଅଗ୍ରଦୂତ, ବିନୋଦ ବିହାରୀ, କଟକ
- ଗୁରୁଜୀ ବୁକ୍‌ଷ୍ଟଲ୍, ଝାଞ୍ଜିରୀମଙ୍ଗଳା, କଟକ

ମୋର ସ୍ୱର୍ଗବାସୀ 'ବୋଉ ଓ ବାପା'
ଯିଏ ମତେ ଆଲୋକକୁ ଆଣିଚନ୍ତି, ମୋ ହାତଧରି ବାଟଚଲା ଶିଖାଇଚନ୍ତି,
ମୋ ପାଟିରେ ପ୍ରଥମ ଅକ୍ଷର କୁହାଇଚନ୍ତି ଓ ସିଲଟ ଖଡ଼ିରେ ମୋତେ ପ୍ରଥମ ଅକ୍ଷର ଲେଖାଇଚନ୍ତି,
ତାଙ୍କରି ଅମ୍ଳାନ, ଅପାଶୋରା ସ୍ମୃତିରେ.....

ଆନନ୍ଦ ଚନ୍ଦ୍ର ପହି

# ଚରିତ୍ର ସୂଚୀ

- ଅବନି : ସରକାରୀ ଚାକିରିଆ । ବୟସ ୫୨ ବର୍ଷ ।
- ଅଥଚ : ଅବନିବାବୁଙ୍କ ପୁଅ । ଶିକ୍ଷିତ ।
  ବୟସ ୨୫/୨୬ ବର୍ଷ ।
- ମଦନ : ବୟସ ୪୦/୪୨ ବର୍ଷ । ଅବନିବାବୁଙ୍କ ଶଳା ।
- ଗଗନ : ଅବନିବାବୁଙ୍କ ପ୍ରସ୍ତାବିତ ସମୁଦି ।
- ଅଜିତ୍ : ଅବନିବାବୁଙ୍କ ଭାବି ଜାମାତା । ଗଗନବାବୁଙ୍କ
  ପୁଅ । ବୟସ ୨୭/୨୮ ବର୍ଷ ।
- ଅନନ୍ତ : ଅବନିବାବୁଙ୍କ ଅଫିସ ସହକର୍ମୀ ।
  ବୟସ ୫୨ ବର୍ଷ ।
- କନକ : ଅବନିବାବୁଙ୍କ ସ୍ତ୍ରୀ ।
  ବୟସ ୪୫ ବର୍ଷ ।
- ମମତା : ଅବନି ବାବୁଙ୍କ ଝିଅ । ଶିକ୍ଷିତା ।
  ବୟସ ୨୨ ବର୍ଷ ।

- ନାଟକଟି ମଞ୍ଚସ୍ଥ କରିବା ପାଇଁ ମାତ୍ର ଗୋଟିଏ ସେଟ୍ ଆବଶ୍ୟକ ।
- ନାଟକଟି ମଞ୍ଚସ୍ଥ କରିବା ପାଇଁ ମାତ୍ର ଦୁଇଟି ନାରୀ ଚରିତ୍ର ଆବଶ୍ୟକ ।
- ନାଟକର ଅଭିନୟ ସମୟ ଏକଘଣ୍ଟା ତିରିଶ ମିନିଟ୍‌ରୁ ଏକ ଘଣ୍ଟା ପଇଁଚାଳିଶ ମିନିଟ୍

ଭୁବନେଶ୍ୱର ଦୂରଦର୍ଶନ କେନ୍ଦ୍ର ଦ୍ୱାରା
ପ୍ରଦର୍ଶିତ "ହଜି ଯାଇଥିବା ମଣିଷ" ନାଟକର
ବିଭିନ୍ନ ଭୂମିକାରେ :

- ଶିବାଜି ମହାପାତ୍ର
- ଶକ୍ତି ପ୍ରସାଦ ବରାଳ
- ଅନନ୍ତ ଦାସ
- ସୁରେଶ ମହାନ୍ତି
- ସମର କୁମାର ପାଣି
- ସଂଦୀପ ପାଣି
- ନର୍ମତା ଦାସ
- ସର୍ମିଳି ମହାପାତ୍ର

ଗୀତ ରଚନା :

- ନିଜାମ

ପ୍ରଯୋଜନା ଓ ନିର୍ଦ୍ଦେଶନା :

- ଜୟଦେବ ଦାସ

---

ଷ୍ଟେଟ୍‌ବ୍ୟାଙ୍କ, ବାପୁଜୀନଗର ଶାଖା, ଭୁବନେଶ୍ୱରଙ୍କ ଦ୍ୱାରା ରବୀନ୍ଦ୍ର ମଣ୍ଡପରେ ୧୯୯୫ରେ ଅଭିନିତ ।
ବିଭିନ୍ନ ଭୂମିକାରେ :

- ଅବନୀ : ହରିନାଥ ମିଶ୍ର
- ଅଥଚ : ଚିତ୍ତ ମିଶ୍ର
- ମଦନ : ଅକ୍ଷୟ ବାରିକ
- ଗଗନ : ଭାଗ୍ୟଧର ପ୍ରଧାନ
- ଅନନ୍ତ : ଦିଗମ୍ବର ସାମଲ
- ଅଜିତ୍ : ସୁରେନ୍ଦ୍ର ନାଥ ସାହୁ
- କନକ : ବିନ୍ଦୁ
- ମମତା : ମାମି
- ସଂଗୀତକାର : ଲକ୍ଷ୍ମୀକାନ୍ତ ପାଲିତ
- ଗୀତ ରଚନା : ଡଃ ବିଜୟ ମହାନ୍ତି
- ନିର୍ଦ୍ଦେଶନା : ମନୋଜ ପଟ୍ଟନାୟକ

# ନାଟ୍ୟକାରଙ୍କ ନିଜ ସଂଳାପ

ଦିନଥିଲା ଓଡିଶାରେ ଏକ ସମୟରେ ଚାରି ଚାରିଟା ରଙ୍ଗମଞ୍ଚରେ ପୂର୍ଣ୍ଣପ୍ରେକ୍ଷାଳୟରେ ନାଟକ ମଞ୍ଚସ୍ଥ ହେଉଥିଲା। ଗୋଟିଏ ଗୋଟିଏ ନାଟକ ସଫଳତାର ସହ ମାସ ମାସ ଧରି ଅଭିନିତ ହୋଇ ଦର୍ଶକମାନଙ୍କ ଦ୍ୱାରା ଆଦୃତ ହେଉଥିଲା। ନୂଆ ନାଟକ ଲେଖିବା ପାଇଁ ନାଟ୍ୟକାର ମାନେ ଆଗ୍ରହ ପ୍ରକାଶ କରୁଥିଲେ। ନୂଆ ନାଟକଟିଏ ଦେଖିବା ପାଇଁ ଦର୍ଶକମାନଙ୍କ ମଧ୍ୟରେ ଉତ୍କ । ଥିଲାଥ   ୦ମଣ

କିନ୍ତୁ ସେ ବେଳ ଆଉ ନାହିଁ। ନାନା କାରଣରୁ ସ୍ଥାୟୀ ରଙ୍ଗମଞ୍ଚ ଗୁଡ଼ିକ ଗୋଟିଏ ପରେ ଗୋଟିଏ ଭୁଷୁଡ଼ି ପଡ଼ିଛି। ବର୍ତ୍ତମାନ ଓଡ଼ିଆ ମଞ୍ଚ ନାଟକର ଦୁର୍ଦ୍ଦିନ ଆସିଛି। ସ୍ଥାୟୀ ରଙ୍ଗମଞ୍ଚ ଭାଙ୍ଗିଯିବା ସଙ୍ଗେ ସଙ୍ଗେ ମଞ୍ଚ ନାଟକର ଘୋର ଅଭାବ ଦେଖା ଦେଇଛି। ଆଜି ମଞ୍ଚ ନାଟକର ଦୁର୍ଭିକ୍ଷ ପଡ଼ିଛି କହିଲେ କିଛି ଭୁଲ୍ ହେବ ନାହିଁ। ଓଡ଼ିଆ ମଞ୍ଚ ନାଟକ ସଂଖ୍ୟା ଆଉ ପ୍ରାୟ ବଢୁ ନାହିଁ। ଓଡ଼ିଆ ସାହିତ୍ୟର ଅନ୍ୟାନ୍ୟ ବିଭାଗରେ ପ୍ରତିବର୍ଷ ଶତାଧିକ ପୁସ୍ତକ ପ୍ରକାଶ ପାଉଥିବା ବେଳେ ନାଟକ ପୁସ୍ତକର ପ୍ରକାଶନ ସଂଖ୍ୟା ଖୁବ୍ ନଗଣ୍ୟ। ଏପରିକି ବର୍ଷକୁ ଦୁଇ, ଚାରଟି ନାଟକ ପୁସ୍ତକରୁ ହୁଏତ ଅଧିକ ପ୍ରକାଶ ପାଉନାହିଁ। ସେଥିରୁ ସଫଳ ମଞ୍ଚନାଟକର ସଂଖ୍ୟା ପୁଣି କେତେ ?

ବର୍ତ୍ତମାନ ନାଟକ ମଞ୍ଚସ୍ଥ କରିବା ପାଇଁ ମଞ୍ଚ ନାହିଁ, ପୃଷ୍ଠପୋଷକତା ନାହିଁ। ନାଟକ ପୁସ୍ତକ ପ୍ରକାଶନ ପାଇଁ କୌଣସି ପ୍ରକାଶକ ଆଗ୍ରହୀ ନୁହଁନ୍ତି।

ଅବଶ୍ୟ କେତେକ ସୌଖିନ ନାଟ୍ୟ ସଂସ୍ଥା, କେତେକ ସରକାରୀ, ବେସରକାରୀ ଦପ୍ତରର କର୍ମଚାରୀ ଓ କେତେକ ଗାଆଁ କ୍ଲବର ଯୁବକ ପ୍ରତିବର୍ଷ କିଛି କିଛି ନାଟକ ମଞ୍ଚସ୍ଥ କରୁଛନ୍ତି। କିନ୍ତୁ ଏମାନେ ମଞ୍ଚସ୍ଥ କରୁଥିବା ନାଟକମାନଙ୍କ ମଧ୍ୟରୁ ମୌଳିକ ଓଡିଆ ମଞ୍ଚନାଟକର ସଂଖ୍ୟା କେତେ ?

ଏମିତି ମଞ୍ଚସ୍ଥ ହେଉଥିବା ନାଟକମାନଙ୍କ ମଧ୍ୟରୁ ଅଧିକାଂଶ ଅନ୍ୟଭାଷାର ନାମିଦାମୀ ନାଟକର ଓଡ଼ିଆ ଅନୁବାଦ, ନହେଲେ ବ୍ୟବସାୟିକ ସଫଳତା ଅର୍ଜନ କରିଥିବା ତଥାକଥିତ ମସଲାଦାର ଅପେରା ନାଟକର କାଣ୍ଡଛାଣ୍ଡ ରୂପ। ଏପରି ନାଟକ ମଞ୍ଚସ୍ଥ ଓଡ଼ିଆ ନାଟ୍ୟ ଆନ୍ଦୋଳନର ଅଗ୍ରଗତିରେ ଆଦୌ ସହାୟକ ନୁହଁ। ଅନୁବାଦ ନାଟକଗୁଡ଼ିକ ଓଡ଼ିଆ ସାହିତ୍ୟ କି ସଂସ୍କୃତି କାହାର ବିକାଶ ସାଧନ କରେ ନାହିଁ। ଆମ ଓଡିଆରେ ଏବେ ବେଶି ସଂଖ୍ୟାରେ ସଫଳ ମଞ୍ଚନାଟକ ଲେଖାଯାଉନାହିଁ। ଏକଥା ସତ୍ୟ। ମଞ୍ଚନାଟକ ପାଇଁ ଏହା ଅତି ଜଟିଳ ସମୟ ଏକଥା ସ୍ୱୀକାର କରିବାରେ କାହାରି କୁଣ୍ଠା ନାହିଁ। କିନ୍ତୁ ଏ ସଂକଟକୁ ଅତିକ୍ରମ କରିବା ପାଇଁ କାହାରି ପକ୍ଷରୁ କିଛି ହେଲେ ଉଦ୍ୟମ ନାହିଁ।

ଅଳ୍ପ କିଛି ଦିନ ତଳେ ରାଜ୍ୟ ସରକାର ରାଜଧାନୀର କଳାମଣ୍ଡପରେ ପ୍ରତି ସଂଧ୍ୟାରେ ଗୋଟିଏ ନାଟକ ମଞ୍ଚସ୍ଥ କରାଇବାର ବ୍ୟବସ୍ଥା କରିଥିଲେ। ଫଳରେ କିଛି ନୂଆ ମଞ୍ଚନାଟକ ଲେଖାଗଲା, ମଞ୍ଚସ୍ଥ ହେଲା। ସେମିତି କିଛି ଆକର୍ଷଣୀୟ ସଫଳତା ମିଳିନଥିଲେ ମଧ୍ୟ ତାହାଯେ ମଞ୍ଚ ନାଟକକୁ ବଞ୍ଚାଇବା ପାଇଁ ନିଶ୍ଚିତ ଭାବେ ଏକ ଫଳପ୍ରଦ ପଦକ୍ଷେପ ଥିଲା ଏହା ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି। ଏହି ବ୍ୟବସ୍ଥା ଆଉ କିଛି ଦିନ ଚାଲିଥିଲେ ହୁଏତ ମଞ୍ଚନାଟକ ତାର ପୂର୍ବ ଲୋକପ୍ରିୟତା ଫେରି ପାଇବାର ଆଶା ଉଜ୍ଜ୍ୱଳ ହୋଇଥାନ୍ତା। କିଛି ନୂଆ ମଞ୍ଚ ନାଟକ ଲେଖାଯାଇଥାନ୍ତା। ଅଭିନେତା, ଅଭିନେତ୍ରୀ, ନିର୍ଦ୍ଦେଶକ, ନାଟ୍ୟକାର ସମସ୍ତଙ୍କୁ ପ୍ରୋତ୍ସାହନ ମିଳିଥାନ୍ତା। କିନ୍ତୁ ଦୁଃଖର କଥା ସେ ବ୍ୟବସ୍ଥାକୁ ସରକାର ଚାଲୁ ରଖିବାକୁ ସମର୍ଥ ହେଲେ ନାହିଁ। ନାନା କାରଣରୁ ତାହା ବନ୍ଦ ହୋଇଗଲା। ସେ ବ୍ୟବସ୍ଥାର ପୁନଃପ୍ରଚଳନ ପାଇଁ ଆଉ କେହି ଉଦ୍ୟମ କରୁ ନାହାଁନ୍ତି।

ଅବଶ୍ୟ ଓଡିଆରେ କିଛି ସଂଖ୍ୟାରେ ବେତାର ଓ

ଦୂରଦର୍ଶନ ନାଟକ ଲେଖାଯାଉଛି । କିନ୍ତୁ ସେଗୁଡ଼ିକର ପ୍ରସାରଣ ସମୟ ସୀମିତ ହୋଇଥିବାରୁ ପୂର୍ଣ୍ଣାଙ୍ଗ ନାଟକଟିଏ ଲେଖିବାର ସଂପୂର୍ଣ୍ଣ ସୁଯୋଗ ସେଥିରେ ନାହିଁ । ତଥାପି ସଫଳତା ଅର୍ଜନ କରିଥିବା ବେତାର ଓ ଦୂରଦର୍ଶନ ନାଟକ ଗୁଡ଼ିକର କଳେବରକୁ ସଂପ୍ରସାରଣ କରି ଓ ମଞ୍ଚ ଉପଯୋଗୀ କରି ପ୍ରକାଶ କଲେ ତାହା ମଞ୍ଚନାଟକର ଅଭାବ ପୂରଣ ଦିଗରେ କିଛି ମାତ୍ରାରେ ସହାୟକ ହୁଅନ୍ତା ।

"ହଜି ଯାଇଥିବା ମଣିଷ" ନାଟକଟି ଦୂର ଦର୍ଶନରେ ପ୍ରଦର୍ଶିତ ହୋଇସାରିବା ପରେ ମୁଁ ଏହାକୁ ମଞ୍ଚୋପଯୋଗୀ କରିଛି ଓ ଏହାର କଳେବରକୁ ବୃଦ୍ଧି କରିଛି । ନାଟକଟି ଭୁବନେଶ୍ୱରର ବାପୁଜୀନଗର ଶାଖା ଷ୍ଟେଟ୍‌ବ୍ୟାଙ୍କର କର୍ମଚାରୀମାନଙ୍କ ଦ୍ୱାରା ରବୀନ୍ଦ୍ରମଣ୍ଡପରେ ସଫଳତାର ସହ ଅଭିନିତ ହୋଇ ଦର୍ଶକମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଛି ।

ଏଇ ନାଟକଟିର ମଞ୍ଚରୂପ ପ୍ରଦାନରେ ବିଶିଷ୍ଟ ନାଟ୍ୟ ନିର୍ଦ୍ଦେଶକ ବନ୍ଧୁ ଶ୍ରୀ ମନୋଜ ପଟ୍ଟନାୟକଙ୍କ ପରାମର୍ଶ ପାଇଁ ତାଙ୍କୁ ମୋର ଆନ୍ତରିକ ଧନ୍ୟବାଦ ।

ନିହଳ ପ୍ରସାଦ — ଆନନ୍ଦ ଚନ୍ଦ୍ର ପହି

ନଭେମ୍ବର, ୧୯୯୬

# ପ୍ରଥମ ଦୃଶ୍ୟ

ଅବନିବାବୁଙ୍କ ବାସଭବନର ଡ୍ରଇଂ ରୁମ୍ । ଅବନିବାବୁ କୁଆଡ଼େ ଚାଲିଯାଇଛନ୍ତି । ବିଭିନ୍ନ ସ୍ଥାନରେ ଖୋଜାଖୋଜି ସରିଲଣି । ତାଙ୍କର କିଛି ଖୋଜ ଖବର ମିଳୁ ନାହିଁ । ତାଙ୍କ ସ୍ତ୍ରୀ କନକ, ପୁଅ ଅଥଚ ଓ ଝିଅ ମମତା ସମସ୍ତେ ଦୁଃଖରେ ଭାଙ୍ଗି ପଡ଼ିଛନ୍ତି ।

ଅଥଚ : ତୁ ସିନା ଘରେ ବସି ଏକଥା କହି ଦେଉଚୁ, ହେଲେ ମୁଁ କୁଆଡ଼େ ଯାଇ ବାପାଙ୍କୁ ଖୋଜିବି ? ସବୁ ଖବରକାଗଜ, ଟିଭି, ରେଡ଼ିଓରେ ବିଜ୍ଞାପନ ଦେଇ ସାରିଚି । ଏ ଭୁବନେଶ୍ୱରକୁ ମୁଁ ତିନି ତିନି ଥର ତନ୍ନତନ୍ନ କରି ଖୋଜି ସାରିଲିଣି । ଥାନାରେ ଡାଇରୀ ଦେଇଚି । ଆମର ଯେତେ ବନ୍ଧୁ ବାନ୍ଧବ ସମସ୍ତଙ୍କୁ ଟେଲିଗ୍ରାମ କରିଥିଲି । ସମସ୍ତେ ମନା କଲେ । ବାପା ଯେମିତି ପବନରେ ମିଶିଯିବା ପରି ମିଶି ଯାଇଚନ୍ତି ।

କନକ : ମୋ ମନ କହୁଚି ତୋ ବାପା ଭୁବନେଶ୍ୱର କି ଏ ପାଖ ଆଖ କୋଉଠି ନାହାଁନ୍ତି । ସିଏ ବମ୍ବେ, ଦିଲ୍ଲୀ କି କଲିକତା ଏମିତି କୋଉ ଦୂର ଜାଗାକୁ ଚାଲି ଯାଇଚନ୍ତି ।

ମମତା : ବାପା କ'ଣ ଛୋଟ ପିଲା ହେଇଚନ୍ତି ? ସିଏ ଯଦି ଚାଲି ଯାଇଚନ୍ତି ପୁଣି ଫେରି ଆସିବେ । ତୁ ଏମିତି ବ୍ୟସ୍ତ କାହିଁକି ହଉଚୁ ?

କନକ : ବ୍ୟସ୍ତ ହେବି ନେଇଁ ? ଜଣେ ଲୋକ ଆଜିକି ଆଠ ଦିନ ହେଲା କୁଆଡ଼େ ଗଲା, କ'ଣ କଲା, ତା'ର ଖବର ଅନ୍ତର କିଛି ନାହିଁ । କୋଉଠି ଥିବେ, କ'ଣ ଖାଉଥିବେ ? ଶୀତଦିନଟା, ସାଙ୍ଗରେ ଶୀତଲୁଗା କିଛି ନେଇ ନାହାଁନ୍ତି । ହଲେ ପ୍ୟାଣ୍ଟ ସାର୍ଟ ଯାହା ପିନ୍ଧିଚନ୍ତି ସେତିକି ।

ଅଥଚ : ବାପା ଯଦି ଦିଲ୍ଲୀ, ବମ୍ବେ କି କଲିକତା ଚାଲିଯାଇଥାଆନ୍ତି ତାହେଲେ ବାଟରେ ଶୀତଲୁଗା କିଣି ନ ଥିବେ ?

କନକ : ସିଏ କ'ଣ ଟଙ୍କା ପଇସା ନେଇଚନ୍ତି ଯେ କିଣିବେ ?

ମମତା : ତୁ ଯୋଉଠି ଯାହା ରଖିଥିଲୁ ସବୁ ଦେଖିଲୁଣିନା ? ସବୁ ଟଙ୍କା ଅଛିନା ? ବାପା କିଛି ନେଇ ନାହାଁନ୍ତି ତ ?

କନକ : ଆଜି ଯାଏ ତାଙ୍କ ହାତରେ ନଦେଲେ ସିଏ ପଇସାଟିଏ ନିଅନ୍ତି ନେଇଁ । ତା' ଛଡ଼ା ତୋ ବାପା ଯୋଉ ଦିନ ଘର ଛାଡ଼ିଲେ ସେ ଦିନ ମାସର ୨୮ ତାରିଖ । ଘରେ ଗୋଟିଏ ହେଲେ ପଇସା ନଥିଲା ।

ଅଥଚ : ବୋଉ ! ତୁ କାହିଁକି ସନ୍ଦେହ କରୁଚୁ ଯେ ବାପା ଦିଲ୍ଲୀ, ବମ୍ବେ କି କଲିକତା ଚାଲିଯାଇ ଥାଇ ପାରନ୍ତି ବୋଲି ?

କନକ : ତୋ ବାପା ଘର ଛାଡ଼ିବା ପୂର୍ବ ଦିନ ତାଙ୍କ କଥାବାର୍ତ୍ତା କେମିତି ଅଲଗା ଅଲଗା ଲାଗୁଥିଲା । ସିଏ ମନକୁ ମନ କ'ଣ କହୁଥିଲେ । ମୁଁ ତାଙ୍କୁ ପଚାରିଲେ କିଛି ନକହି ଚୁପ୍ ହୋଇ ଯାଉଥିଲେ । ଖାଇବା ବେଳେ, ବସିବା ବେଳେ କିଛି ଭାବିଲା ଭାବିଲା ପରି ଜଣାପଡ଼ୁଥିଲେ ।

ମମତା : କାହିଁ ତୁ ତ ଏକଥା ଆମକୁ କେବେ କହି ନଉ ।

କନକ : ମୁଁ ଭାବିଲି ତାଙ୍କ ଅଫିସ୍‌ରେ କିଛି ଅସୁବିଧା ହେଇଚି, ସେଇ କଥା ସିଏ ଚିନ୍ତା କରୁଚନ୍ତି । ଗୋଟେ ଦିନ ଏମିତି ଭାବିଲା, ଭାବିଲା ଦିଶିଲେ, ତାପର ଦିନ ସକାଳୁ ସକାଳୁ କୁଆଡ଼େ ଚାଲିଗଲେ ।

ଅଥଚ : କାହିଁ, ବାପାଙ୍କ ଅଫିସ୍‌ରେତ ସେମିତି କିଛି ଘଟିବା କଥା କେହି କହୁ ନଥିଲେ । ମୁଁ ବାପାଙ୍କ ଅଫିସ୍‌କୁ ଯାଇଥିଲି । ବାପାଙ୍କ ନିଖୋଜ ହେବା କଥା ଶୁଣି ସମସ୍ତେ ଦୁଃଖିତ । ମୁଁ ବାପାଙ୍କର କେତେକ ଅନ୍ତରଙ୍ଗ ସାଙ୍ଗଙ୍କୁ ପଚାରିଲି । ସେମାନେ କହିଲେ, ନିଖୋଜ ହେବା ପୂର୍ବ ଦିନ ସିଏ ଅଫିସ୍ ଆସିଥିଲେ । ସିଏ ଖୁବ୍ ନର୍ମାଲ ଥିଲେ । କିନ୍ତୁ ସେଦିନ ସିଏ କିଛି କାମ କରି ନାହାଁନ୍ତି । କେବଳ ବସି ବସି ଅନ୍ୟମାନଙ୍କ ସହିତ ଗପ କରୁଥିଲେ ।

କନକ : ଗପସପ ବେଳେ କୋଉ ତୀର୍ଥକୁ ଯିବା କଥା କହୁଥିଲେ କି ?
ମମତା : ତୀର୍ଥ କରିବା କଥା ହୋଇଥିଲେ ତତେ କ'ଣ ସାଙ୍ଗରେ ନେଇ ନ ଥାନ୍ତେ ? ନା, ତୀର୍ଥ ଫିର୍ଥ କଥା ମିଛ ।

ଅଥଚ : ବାପାଙ୍କ ଅଫିସ୍‌ର ପ୍ରଶାନ୍ତବାବୁ କହୁଥିଲେ, ବାପା କୁଆଡ଼େ ସେଦିନ ଖବରକାଗଜରେ ବାହାରିଥିବା ଜଣେ ଲୋକର ସନ୍ନ୍ୟାସୀ ହେବା କଥା ତାଙ୍କ ସହିତ ଆଲୋଚନା କରୁଥିଲେ । ଯିଏ ସନ୍ନ୍ୟାସୀ ହେଲା ସେ ଲୋକର ବୟସ ୫୩ ବର୍ଷ । ସିଏ ତାର ସରକାରୀ ଚାକିରି ଆଉ ସମସ୍ତ ପରିବାରକୁ ଛାଡ଼ି ସନ୍ନ୍ୟାସୀ ହେଇଗଲା ।

କନକ : ସନ୍ନ୍ୟାସୀ ହେଇଗଲା ?

ଅଥଚ : ସଂସାର ଜଞ୍ଜାଳ ଛାଡ଼ି ଏମିତି ସନ୍ନ୍ୟାସୀ ହେବାଟା ନୂଆ କଥା ନୁହଁ ବୋଲି ବାପା କୁଆଡ଼େ ପ୍ରଶାନ୍ତବାବୁଙ୍କ ସହିତ ଯୁକ୍ତି କରୁଥିଲେ । ବାପା କୁଆଡ଼େ କହୁଥିଲେ, ବାନପ୍ରସ୍ଥ ଯିବା ପାଇଁ ଆମ ପୁରାଣ, ଶାସ୍ତ୍ରରେ ବ୍ୟବସ୍ଥା ଅଛି ।

କନକ : ତୋ ବାପା ତାହେଲେ କ'ଣ·····

ଅଥଚ : ନା, ମୋର ବିଶ୍ୱାସ ହେଉ ନାହିଁ । ସନ୍ନ୍ୟାସୀ ହେବାଟା କୌଣସି ବନ୍ଧୁ ବାନ୍ଧବ ଘରକୁ ଯିବା ପରି ଆକସ୍ମିକ ହୁଏ ନାହିଁ । ସେଥି ପାଇଁ ମନରେ ସନ୍ନ୍ୟାସୀ ଭାବ ଆସିବା କଥା । କାହିଁ ମୁଁ ତ ବାପାଙ୍କର ସେମିତି ସନ୍ନ୍ୟାସ ଭାବ କେବେ ଦେଖି ନାହିଁ ।

କନକ : ସିଏତ କେବେ ମନ୍ଦିର କି ମଠକୁ ଯିବାକୁ ମାଙ୍ଗନ୍ତି ନାହିଁ ।

ମମତା : ନା, ବାପା ସନ୍ନ୍ୟାସୀ ହେବା କଥା ମିଛ ।

ମଦନ : (ହଠାତ୍ ପ୍ରବେଶି) ଭାଇ ପୁଣି ସନ୍ନ୍ୟାସୀ ହେବେ ? ଏଇଟା କଶ୍ମିନ୍‌କାଳେ ସମ୍ଭବ ନୁହେଁ । ଘରଦ୍ୱାର ଛାଡି ଯିଏ ଗୋଟେ ଦିନ ବନ୍ଧୁ ବାନ୍ଧବ ଘରେ ବି ରହେ ନାହିଁ, ସିଏ ସନ୍ନ୍ୟାସୀ ହେବ ? ମୋ ମନକୁ କଥାଟା ମୋଟେ ପାଉ ନାହିଁ ।

କନକ : ତୁ ଆଉ କୋଉଠି କୋଉଠି ଖୋଜିଲୁ ?
ମଦନ : ମୁଁ ଆମ ଗାଆଁ ଦଇବଳ ପାଖରେ ନଖ ଦର୍ପଣ କରିଥିଲି ।

କନକ : ନଖଦର୍ପଣବାଲା କ'ଣ କହିଲା ?

ମଦନ : କୁହା କୁହି ନାହିଁ । ସେସବୁ କୁହା କହି କଥାରେ ମୋର ବିଶ୍ୱାସ ନାହିଁ । ପଇସା ପାଇଁ ନାହାକ, ଜ୍ୟୋତିଷ ଆକାଶରୁ ତୋଳି ଆଣି ବଡ଼ବଡ଼ କଥା କହିଦେବେ । କିନ୍ତୁ ନଖ-ଦର୍ପଣବାଲା ଖୋଦ୍ ଦେଖାଇ ଦେଲା ।

ମମତା : କ'ଣ ଦେଖେଇ ଦେଲ ମାମୁ ?

ମଦନ : ତୋ ବାପାଙ୍କୁ ।

ଅଥଚ : ବାପାଙ୍କୁ ତମେ ଦେଖିଲ ?

କନକ : ସତ କହୁଚୁ ?

ଅଥଚ : ମାନେ ନିଜ ଆଖିରେ ଦେଖିଲ ?

ମମତା : ବାପା ତାହେଲେ କୋଉଠି ଅଛନ୍ତି ମାମୁ ?

କନକ : ତୁ ତାଙ୍କ ସାଙ୍ଗରେ କଥା ହେଇଚୁ ? ସିଏ ଭଲରେ ଅଛନ୍ତିତ ?

ମଦନ : ମୁଁ ତାଙ୍କୁ କେମିତି ଦେଖିବି ?

ମମତା : ତମେ ପରା ଏଇଲେ କହିଲ, ତମେ ତାଙ୍କୁ ଦେଖିଛ ବୋଲି !

ମଦନ : ମୁଁ ନଖ ଦର୍ପଣରେ ତୋ ବାପାଙ୍କ ଛାଇ ଦେଖିଲି ।

ଅଥଚ : ଦର୍ପଣରେ ତାଙ୍କ ଛାଇ କ'ଣ ଦେଖିଲ ? ତାଙ୍କ ପ୍ରତିଛବି ଦେଖିଥିବ ।

ମଦନ : ନଖ ଦର୍ପଣଟା କ'ଣ ଗୋଟେ ଦର୍ପଣ ବୋଲି ତମେ ସବୁ ଭାବୁଚ ? ନଖଟାକୁ ଦର୍ପଣ ଭାବରେ ଦେଖିବା କଥା ନା ।

ମମତା : ନଖଟା କେମିତି ଦର୍ପଣ ହବ ?

ମଦନ : ହେଇ, ମୋର ଏ ବୁଢ଼ା ଆଙ୍ଗୁଠି ନଖକୁ ଅନା । କିଛି ଦେଖି ପାରୁଚ ?

( ମମତା, ଅଥଚ ଓ କନକ ଆଗ୍ରହର ସହିତ ମଦନର ନଖକୁ ଚାହିଁ ରହିଲେ । ସେମାନେ କିଛି ଦେଖି ନପାରିବାର ହତାଶ ଭାବ ସେମାନଙ୍କ ମୁହଁରୁ ସ୍ପଷ୍ଟ ପଡ଼ି ହେଉଥିଲା । )

ମଦନ : ଏମିତି ଏଇ ଖାଲି ନଖଟାରେ କିଛି ଦିଶିବ ନେଇଁ । ନଖ-ଦର୍ପଣବାଲା ଏ ନଖରେ ଗାଢ଼ କଳା ନଗେଇ ଦେଇ ଚକ୍ ଚକ୍ କରି ଦେଲା । ନଖଟା ଅର୍ଖ ନୂଆ ଦର୍ପଣ ପରି ଦାଉ ଦାଉ ହେଲା । ସେଇ କଳା ନଖ ଉପରେ ଧୀରେ ଧୀରେ ଗୋଟେ ମଣିଷର ଛାଇ ପଡିଲା ।

କନକ : ସେ ଛାଇଟା କ'ଣ ଯାଙ୍କ ଛାଇ ପରି ଚିହ୍ନି ହଉଥିଲା ?

ମଦନ : ତୁ କ'ଣ ପେ କହୁ ଅପା, ମୁଁ ଭାଇଙ୍କ ସାଙ୍ଗରେ ଏତେ ଦିନ କାରବାର କଲି ମୁଁ ଭାଇଙ୍କ ଛାଇଟା ଚିହ୍ନି ପାରିବି ନାହିଁ ?

ମମତା : ବାପା କ'ଣ କରୁଚନ୍ତି, କୋଉଠି ଅଛନ୍ତି ?

ମଦନ : ମତେ ଲାଗିଲା ସତେ ଯେମିତି ସିଏ ବନ୍ଧନରେ ପଡ଼ିଯାଇଛନ୍ତି ।

କନକ : ବନ୍ଧନରେ ? କିରେ ବନ୍ଧନରେ କ'ଣ ? ତାଙ୍କୁ କ'ଣ କିଏ ବାନ୍ଧିକି ରଖିଚି ?

ମଦନ : ବନ୍ଧନରେ କହିଲେ ତୁ ବୁଝୁଛୁ କ'ଣ ତାଙ୍କ ହାତ, ପାଦକୁ କିଏ ବାନ୍ଧିକି ରଖିଛି ? ନା, ସେ ବନ୍ଧନ ନୁହଁ ।

କନକ : ଆଉ କି ବନ୍ଧନ ?

ମଦନ : ତାଙ୍କୁ ଯେମିତି କିଏ ମେସ୍‌ମେରିଜିମ କରିଦେଇଚି । ମେସ୍‌ମରଜିମ କ'ଣ ବୁଝିପାରୁଚୁଟି ? ନା, ତୁ ବୁଝିପାରିବୁ ନେଇଁ । କିରେ ଅଥଚ ତୁ ବୁଝି ପାରୁଚୁ ତ ? ମମତା ତୁ ?

ଅଥଚ }
ମମତା } ହଁ, ଆମେ ଜାଣିଚୁ ।

ମଦନ : ବୁଝେଇ ଦିଅ ତମ ବୋଉକୁ, ମୁଁ ବୁଝେଇ ପାରିବି ନେଇଁ ।

କନକ : ମୋର ସେଗୁଡ଼ା ବୁଝିବା ଦରକାର ନାହିଁ । ତୁ ତ କହୁଚୁ ତାଙ୍କୁ କେହି ବାନ୍ଧି ନାହାଁନ୍ତି । ସିଏ ଚଳପ୍ରଚଳ କରୁଥିବେ ତ ?

ମଦନ : ହଁ ଯେ...... ହେଲେ......

କନକ : ପୁଣି ହେଲେ କ'ଣ ?

ମଦନ : ନିଜ ଇଚ୍ଛା ଅନୁସାରେ ଚଳପ୍ରଚଳ କରିପାରୁ ନାହାଁନ୍ତି । ସିଏ ଯାହା କହୁଚି ଭଇ ସେଇଆ କରୁଚନ୍ତି । ସିଏ ଯେତିକି ବାଟ ଚାଲିବାକୁ କହୁଚି ଭଇ ଠିକ୍ ସେତିକି ବାଟ ଚାଲୁଚନ୍ତି ତାଠୁ ପାଦେ ବେଶୀ ନୁହଁ କି ପାଦେ କମ୍ ନୁହଁ । ସିଏ ବସ କହିଲେ ବସୁଚନ୍ତି, ଉଠ କହିଲେ ଉଠୁଚନ୍ତି ।

କନକ : ସେ ଲୋକଟା କିଏ ତାଙ୍କୁ ଏମିତି ବନ୍ଧନରେ ପକେଇଚି ?

ମଦନ : ତା ମୁହଁଟା ଯଦି ନଖ ଦର୍ପଣରେ ଦିଶୁ ଥାଆନ୍ତା ତାହେଲେ ଏତେ କଥା କାହିଁକି ହୁଅନ୍ତା ?

ଅଥଚ : ବାପା ତାହେଲେ ଏଇଲେ କୋଉଠି ?

ମଦନ : ନଖଦର୍ପଣବାଲା କହିଲା, ସିଏ ବେଶୀ ବାଟ ଯାଇ ନାହାଁନ୍ତି । ଏଇ ଶହେ ଦୁଇଶ କିଲୋମିଟର ଭିତରେ କୋଉଠି ଅଛନ୍ତି ।

କନକ : କେବେ ଫେରିବେ ?

ମଦନ : ସେଇ କଥାଟା ସେ ନଖଦର୍ପଣବାଲାଟା ମୋତେ କଇଲା ନେଇଁ । ସିଏ କହିଲା, ତାଙ୍କର ନିହାତି ପାଖ ଲୋକ ନ ଆସିଲେ ସିଏ କହି ପାରିବ ନେଇଁ । ଅପା ତୁ ଚାଲ, ସିଏ କହିଦେବ ଭଇ କୋଉ ଦିଗକୁ ଯାଇଚନ୍ତି, କେବେ ଫେରିବେ । ବେଶୀ କିଛି ଖର୍ଚ୍ଚ ହବ ନେଇଁ । ମୋ ସାଙ୍ଗରେ ଯିବୁ, ମୋ ସାଙ୍ଗରେ ଚାଲି ଆସିବୁ ।

ମମତା : ସେ କଥା କ'ଣ ଜ୍ୟୋତିଷ କହୁ ନେଇଁ କି ?

ମଦନ : ଜ୍ୟୋତିଷ କ'ଣ କହୁଚି ?

ମମତା : ଜ୍ୟୋତିଷ କ'ଣ କହିଲଟି ବୋଉ ?

କନକ : କହିଲା, ଘରଠୁ କିଛି ବାଟ ପୂର୍ବ ଦିଗକୁ ଯାଇ ତାପରେ ଉତ୍ତରକୁ ଆଉ ତାପରେ ଦକ୍ଷିଣକୁ ଯାଇଚନ୍ତି ।

ମଦନ : ଆଉ ଫେରିବା କଥା କ'ଣ କହିଲା ?

କନକ : କହିଲା, ଅଳ୍ପ ଦିନରେ ଫେରି ଆସିବାର ପାଠ ଡ଼ାକୁଚି ହେଲେ ତାଙ୍କ ଗ୍ରହଟା ତାଙ୍କ ଭାଗ୍ୟ ଚକ୍ର ଭିତରେ ପଶି ତାଙ୍କୁ

ବୁଲାଉଚି । ସିଏ ଆସିବାକୁ ଚେଷ୍ଟା କରୁଚନ୍ତି କିନ୍ତୁ ବାଟ ପାଉ ନାହାଁନ୍ତ ।

[ ଏହି ସମୟରେ କଲିଂ ବେଲ୍ ବାଜିବା ଶବ୍ଦ ହେଲା । ]

କନକ : କିଏ ଡାକୁଚି, ମୁଁ ଦେଖେ ।
(କବାଟ ପାଖକୁ ଗଲେ )

ଅନନ୍ତ : (ପ୍ରବେଶ କରି) ନମସ୍କାର ।

କନକ : ନମସ୍କାର ।

ଅଥଚ }
ମମତା } ନମସ୍କାର ମଉସା ।

ଅଥଚ : ବସନ୍ତୁ ।
( ଅନନ୍ତବାବୁ ସୋଫା ଉପରେ ବସିଲେ )
ମାମୁ ! ଏ ହେଉଚନ୍ତି ଅନନ୍ତ ମଉସା । ବାପାଙ୍କ ଅଫିସ୍‌ରେ କାମ କରନ୍ତି । ବାପାଙ୍କ ସାଙ୍ଗ ।

ଅନନ୍ତ : ନମସ୍କାର ।

ମଦନ : ନମସ୍କାର ।

ଅନନ୍ତ : ଏଇ ଆମ ଅଫିସ୍ ପିଅନ ସଦାନନ୍ଦ, ତା ଘର ଯୋରନ୍ଦା ପାଖରେ । ସିଏ ମାସେ ଛୁଟିରେ ଥିଲ । ଆଜି ଜଏନ୍ କଲ ।

ମଦନ : ଏ ସଦାନନ୍ଦ କଥା କାହିଁକି ?

ଅନନ୍ତ : ସଦାନନ୍ଦ ଆଜି ଅବନିବାବୁଙ୍କୁ ଯୋରନ୍ଦାରେ ଦେଖିଛି ।

କନକ }
ଅଥଚ }
ମମତା } ଆପଣ ସତ କହୁଛନ୍ତି !
ମଦନ }

ଅନନ୍ତ : ସିଏତ କହୁଛି ଦେଖିଛି ବୋଲି ।

ଅଥଚ : ସିଏ ବାପାଙ୍କ ସହିତ କଥାବାର୍ତ୍ତା କରିଚନ୍ତି ?

ମମତା : ବାପା ତାଙ୍କୁ କିଛି କହି ନାହାଁନ୍ତି ?

ଅନନ୍ତ : ନା, ସଦାନନ୍ଦ ଭୁବନେଶ୍ୱର ଆସିବ ବୋଲି ବସ୍‌ରେ ବସିଥିଲ । ଅବନିବାବୁ ସେଠୁ ଖଣ୍ଡେ ଦୂରରେ ଯୋରନ୍ଦା ମନ୍ଦିର ଆଡ଼କୁ ଯାଉଥିଲେ ।

ମଦନ : ସିଏ ଟିକେ ବସ୍‌ରୁ ଓହ୍ଲେଇ ଯାଇ ପଗ୍ୱରିଥିଲେ ହେଇ ନଥାନ୍ତା ?

ଅନନ୍ତ : ସଦାନନ୍ଦ ମାସେ ହେଲ ଛୁଟିରେ ଥିଲ । ଅବନିବାବୁ ନିଖୋଜ ହେବା କଥା ସିଏ ଜାଣି ନଥିଲ । ତା ଛଡ଼ା ବସ୍ ସେତେବେଳକୁ ଛାଡ଼ି ଦେଲ । କିନ୍ତୁ ସିଏ ଜୋର୍‌ଦେଇ କହୁଛି ସିଏ ନିଶ୍ଚୟ ଅବନିବାବୁ ।

କନକ : ହେ ମହିମା ଗୋସେଇଁ, ତାଙ୍କୁ ଘଣ୍ଟ ଘୋଡ଼େଇ ରଖ ପ୍ରଭୁ !

ଅନନ୍ତ : ଅବନିବାବୁ ଘର ଛାଡ଼ିବା ପୂର୍ବଦିନ ଅଫିସ୍‌ରେ ସନ୍ୟାସ ଆଉ ବାନପ୍ରସ୍ଥ କଥା ଆଲୋଚନା କରୁଥିଲେ । ସେଥି ପାଇଁ ଆଶଙ୍କା ହେଉଛି କାଳେ ସିଏ ଯୋରନ୍ଦା, କପିଳାସ, ପୁରୀ ପରି କୌଣସି ଧର୍ମପୀଠକୁ ଗ୍ୱଲିଯାଇ ଥିବେ ।

ମଦନ : ହଁ, ସେ କଥା ବି ହେଇ ପାରେ ।

କନକ : ମଦନ ! ତୁ ଅଥଚକୁ ସାଙ୍ଗରେ ନେଇ ଆଜି ଯୋରନ୍ଦା ଆଉ କପିଳାସ ଗ୍ୱଲି ଯା ।

ଅନନ୍ତ : ଯିବା କଥା ଯଦି ଏଇ ସାଙ୍ଗେ ସାଙ୍ଗେ ବାହାରନ୍ତୁ ।

କନକ : ଡେରି ହେଲେ ସେ ଆଉ କୁଆଡ଼େ ଗ୍ୱଲି ଯିବେ ।

ଅନନ୍ତ : ଆମେ ସଦାନନ୍ଦକୁ ଆପଣଙ୍କ ସାଙ୍ଗରେ ପଠାଇ ଦେବୁ । ତାଙ୍କ ଗାଆଁ ପାଖ ଅଞ୍ଚଳ । ସିଏ ଖୋଜା ଖୋଜିରେ ଆପଣଙ୍କୁ ସାହାଯ୍ୟ କରିବ ।

ମମତା : ଭଇ ! ତୁ ବାହାର । ଡେରି କରୁଚୁ କାଇଁକି ?

ଅଥଚ : ମୁଁ ତାହେଲେ ସାର୍ଟ ଚେଞ୍ଜ୍ କରି ଆସୁଛି । ତମେ ବାହାର ମାମୁ ।
(ଭିତରକୁ ଗଲ)

ମଦନ : ମୋର ଆଉ ବାହାରିବାର କ'ଣ ଅଛି ? ମୁଁ ଏମିତି ଗ୍ୱଲିଯିବି ।

ଅନନ୍ତ : ମୁଁ ତାହେଲେ ଯାଉଚି ସଦାନନ୍ଦକୁ ଧରି ବସ୍‌ଷ୍ଟାଣ୍ଡ୍‌କୁ ଯିବି । ଆପଣମାନେ ଶୀଘ୍ର ବସ୍‌ଷ୍ଟାଣ୍ଡ୍‌କୁ ଆସନ୍ତୁ ।

ମଦନ : ନାଇଁ -ନାଇଁ ଅନନ୍ତବାବୁ, ଆପଣ ଟିକିଏ ରୁହନ୍ତୁ ଏକା ସାଙ୍ଗରେ ବାହାରି ଯିବା । ଆରେ ଅଥଚ ଶୀଘ୍ର ଆ ।

ଅଥଚ : (ଭିତରୁ) ଯାଉଚି ମାମୁ !
(ସାର୍ଟଟେ ପିନ୍ଧୁ ପିନ୍ଧୁ ଭିତରୁ ଆସିଚି ଅଥଚ )
ଚାଲନ୍ତୁ ।

( ଅନନ୍ତ, ମଦନ ଓ ଅଥଚର ପ୍ରସ୍ଥାନ । କନକ ଓ ମମତା ସେମାନଙ୍କ ଯିବା ବାଟକୁ ଚାହିଁ ରହିଲେ । )



# ଦ୍ୱିତୀୟ ଦୃଶ୍ୟ

ଅବନିବାବୁଙ୍କ ଡ୍ରଇଂ ରୁମ୍ । ମମତା ଓ ଅଜିତ ଦୁହେଁ କଥାବାର୍ତ୍ତା ହେଉଥିଲେ ।

ମମତା : ନା, ଅଜିତ ! ବାପା ଓଡ଼ିଶାରେ ନାହାଁନ୍ତି । ଭଇ ଆଉ ମାମୁ ଖୋଜି ଖୋଜି ଥକିଲେଣି । ବାପାଙ୍କ ଅଫିସ୍ ପିଅନ ସଦାନନ୍ଦ କହିଲା ସିଏ ବାପାଙ୍କୁ ଯୋରନ୍ଦାରେ ଦେଖିଛି ବୋଲି । ସେଇ ସଦାନନ୍ଦକୁ ସାଙ୍ଗରେ ନେଇ ମାମୁ ଆଉ ଭଇ ସେଇଦିନ ଯୋରନ୍ଦା ଗଲେ; କିନ୍ତୁ ପାଇଲେ ନାହିଁ ।

ଅଜିତ : ସେ ପିଅନ ପରା ତୁମ ବାପାଙ୍କୁ ଦେଖିଥିଲା ? ପାଇଲେ ନାହିଁ କେମିତି ?

ମମତା : ସେ ପିଅନ ଯାହାକୁ ଦେଖିଥିଲା ତାକୁ ଯୋରନ୍ଦାରେ ଏମାନେ ପାଇଲେ; କିନ୍ତୁ ସିଏ ବାପା ନୁହଁନ୍ତି । ବାପାଙ୍କ ପରି ଦେଖା ଯାଉଥିବା ଆଉ ଜଣେ ମଣିଷ ।

ଅଜିତ : ହଜି ଯାଇଥିବା ସାନ ପିଲାକୁ ସିନା ଖୋଜି ପାଇ ହେବ; ହେଲେ ହଜି ଯାଇଥିବା ବାପାଙ୍କୁ ଖୋଜି ପାଇବା ଅସମ୍ଭବ ।

ମମତା : ଅସମ୍ଭବ ? କ'ଣ ଯେ ତୁମେ କୁହ ଅଜିତ......

ଅଜିତ : ସାନ ପିଲମାନେ ହୁଏତ ଘରକୁ ଫେରିବାର ବାଟ ଭୁଲି ଅନ୍ୟତ୍ର ଚାଲି ଯାଆନ୍ତି । କେମିତି ଘର ପାଇବେ ସେଥିପାଇଁ ସବୁବେଳେ ସୁଯୋଗ ଖୋଜୁ ଥାଆନ୍ତି । ଅସହାୟ ଭବେ କାନ୍ଦି କାନ୍ଦି ଅନ୍ୟର ଦୃଷ୍ଟି ଆକର୍ଷଣ କରନ୍ତି । କିନ୍ତୁ ବାପାମାନେ ? ଯେଉଁମାନେ ଘରକୁ ବାଟ ଭୁଲିବାର ଆଦୌ ସମ୍ଭାବନା ନାହିଁ. ସେମାନେ ହଜିବେ କେମିତି ?

ମମତା : ମୋ ବାପା ହଜି ଯିବାଟା କ'ଣ ମିଛ ? ଆମେ ତାହେଲେ କ'ଣ ମିଛ କହୁଛୁ ?

ଅଜିତ : ଏ କଥା ମିଛ ବୋଲି ମୁଁ କେତେବେଳେ କହିଲି ? ତୁମ ବାପା କିଛି ଦିନ ହେଲା ଘରେ ନାହାଁନ୍ତି । କୁଆଡ଼େ ଗ୍ଲଲି ଯାଇଚନ୍ତି । କିନ୍ତୁ ତୁମ ବାପା ହଜି ଯିବା କଥାଟା ଠିକ୍ ନୁହଁ ।

ମମତା : ଘରୁ କୁଆଡ଼େ ଗ୍ଲଲିଯିବା ଓ ହଜିଯିବା ଏକା କଥା ।

ଅଜିତ : ନା, ମମତା ! ମୁଁ ତୁମକୁ ଏଇ ଟିକେ ଆଗରୁ କହିଲି,ଯିଏ ହଜି ଯାଇ ଥାଏ ସିଏ ଘରକୁ ଆସିବାକୁ ଚେଷ୍ଟା କରେ । କିନ୍ତୁ ଘରକୁ ବାଟ ପାଏ ନାହିଁ ବୋଲି ଫେରି ପାରେ ନାହିଁ । ତୁମ ବାପା କ'ଣ ସତରେ ଘରକୁ ଫେରିବା ବାଟ ପାଉ ନାହାନ୍ତି ବୋଲି ଆସୁ ନାହାନ୍ତି ?

ମମତା : ମୋ ବାପା କାହିଁକି ଗଲେ ଆଉ କେମିତି ଗଲେ, ସେ କଥା ଆମକୁ କାହାକୁ ହେଲେ ଜଣା ନାହିଁ ।

ଅଜିତ : ତୁମ ବାପା ଯେଉଁ କାରଣରୁ ଯାଆନ୍ତୁ ବା ଯେମିତି ଯାଆନ୍ତୁ ସିଏ ଇଚ୍ଛା କରି ଯାଇଛନ୍ତି । ଘରକୁ ଫେରିବାକୁ ଇଚ୍ଛା କରୁ ନାହାନ୍ତି ।

ମମତା : କିନ୍ତୁ ଇଚ୍ଛା କରି କାହିଁକି ଯିବେ ? ଘରେ ବାପାଙ୍କର କାହା ସହିତ କିଛି ମନୋମାଳିନ୍ୟ ହେଇ ନେଇଁ ।

ଅଜିତ : ମୁଁ ସେ କଥା କହି ପାରିବି ନାହିଁ । ତମେ ଜାଣିଥିବ ।

ମମତା : ତମେ ଏମିତି କ'ଣ କହୁଚ ଅଜିତ ? ମୋ ବାପାଙ୍କର ସନ୍ଧାନ ନେବା କ'ଣ ତମର କର୍ତ୍ତବ୍ୟ ନୁହଁ ? ଭାଇ ତାଙ୍କ କର୍ତ୍ତବ୍ୟ କରୁଚନ୍ତି, ମାମୁ ତାଙ୍କ କର୍ତ୍ତବ୍ୟ କରୁଚନ୍ତି । ତୁମେ ଏ ଘରର ଭାବି ଜାମାତା ହିସାବରେ କିଛି କରିବା ଦରକାର ।

ଅଜିତ : ସୀତାଙ୍କୁ ବିବାହ କରିବାକୁ ରାମଚନ୍ଦ୍ରଙ୍କୁ ଶିବଧନୁରେ ଗୁଣ ଦେବାକୁ ପଡ଼ିଥିଲା । ଦ୍ରୌପଦୀଙ୍କୁ ପାଇବା ପାଇଁ ଅର୍ଜୁନଙ୍କୁ ଦୁର୍ଭେଦ୍ୟ ଲକ୍ଷ ବିନ୍ଧିବାକୁ ପଡ଼ିଥିଲା । ତୁମକୁ ବିବାହ କରିବା ପାଇଁ ମୋତେ ତୁମ ବାପାଙ୍କୁ ଖୋଜି ଆଣିବାକୁ ପଡ଼ିବ । ଏଇୟା ନା ?

ମମତା : ମୋ ବାପାଙ୍କୁ ଖୋଜି ଆଣିବା କଥା ମୁଁ ତୁମକୁ କହୁ ନାହିଁ । ଅନ୍ୟମାନଙ୍କ ପରି ତୁମେ ତୁମର କର୍ତ୍ତବ୍ୟ କର । ଅନ୍ତତଃ କଲିକତା, ଦିଲ୍ଲୀ, ବମ୍ବେ ଏଇ ତିନିଟା ଜାଗାରେ ବାପାଙ୍କୁ ଖୋଜ । ମିଳିବା ନ ମିଳିବା ତୁମ ହାତର କଥା ନୁହେଁ ।

ଅଜିତ : ତୁମେ ଠିକ୍ କହିଛ । ମୁଁ ଖୋଜିବାର ଅଭିନୟ କରିବି ।

ମମତା : ଅଭିନୟ ?

ଅଜିତ : ଅଭିନୟ ନୁହଁ ଆଉ କ'ଣ ? କଲିକତା, ଦିଲ୍ଲୀ, ବମ୍ବେ ପରି ସହରରେ ମୁଁ କ'ଣ ବା ଖୋଜିବି ? ମୁଁ ଜାଣେ ତମ ବାପାଙ୍କୁ ମୁଁ ପାଇବି ନାହିଁ । କେବଳ ତମ କହିବା କଥା ରକ୍ଷାକରି ଖୋଜିବି । ଏଇଟାକୁ ତୁମେ ଅନ୍ୟ ଯାହା କହିପାର, କିନ୍ତୁ ମୋ ମତରେ ଏଇଟା ଖୋଜିବାର ଏକ ଅଭିନୟ ।

( ଏଇ ସମୟରେ ବାହାରୁ ଆସିଛନ୍ତି କନକ । ଦୁହେଁ ପରସ୍ପରଠାରୁ ସାମାନ୍ୟ ଦୂରେଇ ଯାଇଛନ୍ତି । )

ଅଜିତ : ନମସ୍କାର ।

କନକ : ତମେ କେତେବେଳୁ ଆସିଲଣି ପୁଅ ?

ଅଜିତ : ଏଇ ଅଳ୍ପ ସମୟ ହେଲା ।

ମମତା : ବୋଉ ! ଏଇ ଅଜିତ... ... ... ବାପାଙ୍କୁ ଖୋଜିବା ପାଇଁ କଲିକତା, ବମ୍ବେ ଆଉ ଦିଲ୍ଲୀ ଯିବାକୁ ବାହାରିଚନ୍ତି ।

ଅଜିତ : ନାଇଁ......... ଏଇ.........

ମମତା : ଏଥିରେ ସଙ୍କୋଚ କରିବାର କ'ଣ ଅଛି ? ବୋଉ ଆସିବା ଆଗରୁ କହୁଥିଲ ତମେ ଛୁଟି ନେଇ ସାରିଛ ବୋଲି । ଆଗେ ଦିଲ୍ଲୀ, ତାପରେ ବମ୍ବେ, ତାପରେ କଲିକତା ଯିବ । ଏଇୟା ନା ?

ଅଜିତ : ନାଇଁ...... ମୁଁ...... ଏଇ......

ମମତା : ନାଇଁ... ଏଇ କ'ଣ ହେଉଚ ? ଓଃ ସରି, ସରି । ତମେ ଆଗ କଲିକତା, ତାପରେ ଦିଲ୍ଲୀ, ତାପରେ ବମ୍ବେ ଯିବ । ଏଇୟା ତ ? (ଆଖି ଠାରି 'ହଁ' ମାରିବାକୁ କହିଲା)

ଅଜିତ : ହଁ ।

ମମତା : ନିଜ କଥାତ ନିଜେ କହି ପାରୁନା । ତମେ ଏ ସହର ସବୁଠୁ ଯାଇ କେମିତି ଖୋଜିବ ?

ଅଜିତ : ସେଥି ପାଇଁ କହୁଥିଲି······

କନକ : ତମେ କ'ଣ କହିବାକୁ ଚାହୁଁଚ କୁହ ପୁଅ ।

ଅଜିତ : ମୁଁ କହୁଥିଲି······

ମମତା : (କଥା ଛଡ଼ାଇ) ସିଏ କହୁଥିଲେ ବାପାଙ୍କର ଗୋଟେ ପାଶ୍‌ପୋର୍ଟ ସାଇଜର ଫଟୋ ହେଲେ ଖୋଜିବାକୁ ସୁବିଧା ହୁଅନ୍ତା । ସିଏ ବାପାଙ୍କୁ କମା ଥରେ କି ଦୁଇ ଥର ଦେଖି-ଚନ୍ତି । ଚିହ୍ନିବାକୁ ହୁଏତ ଅସୁବିଧା ହୋଇପାରେ ।

କନକ : ତାଙ୍କ ଫଟ ଖବରକାଗଜରେ ଦିଆଯାଇଥିଲା । ସେଇ ଖବରକାଗଜରୁ ଗୋଟେ ନେଲେ ହବ ?

ଅଜିତ : (ମମତାକୁ ଟିକେ ଚାହିଁଲେ । ମମତା ହଁ ମାରିବାକୁ ଠାରିଲେ ।) ହଁ, ଚଳିବ ।

କନକ : ମମତା ! ଚାହିଁକି ଠିଆ ହେଲୁ କ'ଣ ? ଯାଆ, ଗୋଟେ ଖବରକାଗଜ ଆଣିକି ଦେ ।

ମମତା : ଆଣୁଚି । (ପ୍ରସ୍ଥାନ)

କନକ : ଏମିତି ଗୋଟେ ନିହାତି ଅସମୟରେ ଏତେ ଅସୁବିଧାରେ ପକେଇ ଦେଇ ସିଏ ଚାଲିଯିବେ ବୋଲି ମୁଁ କେବେ ଭାବି ନଥିଲି ।

ଅଜିତ : ଏମିତି ଅନେକ ଘଟଣା ଖୁବ୍ ଅତର୍କିତ ଭାବେ ଘଟେ । ଘଟଣା ନକହି ଏହାକୁ ଦୁର୍ଘଟଣା କହିବା ହୁଏତ ଅଧିକ ଠିକ୍ ହେବ । ଏସବୁ ଦୁର୍ଦ୍ଦିନର ସାମନା କରିବା ପାଇଁ ଅଶେଷ ମନୋବଳ ଆଉ ଧୈର୍ଯ୍ୟ ଦରକାର ।

କନକ : (କାନ୍ଦ କାନ୍ଦ ହୋଇ) ମୋର ସବୁ ଥାଇ ବର୍ତ୍ତମାନ କିଛି ନାହିଁ । ମତେ ଚାରିଆଡ଼ ଅନ୍ଧାର ଦିଶୁଚି । ମୋ ଦେହ, ମନ ସବୁଥିରୁ ବଳ ଖସି ପଡ଼ୁଛି । ମୁଁ ଦିନକୁ ଦିନ ଅଧିକ ଦୁର୍ବଳ ହୋଇ ଯାଉଛି ।

ଅଜିତ : ଆପଣ ଏତେ ହତାଶ ହୁଅନ୍ତୁ ନାହିଁ । ଆପଣଙ୍କର ସେମିତି କିଛି ଅସୁବିଧା ହେବ ନାହିଁ । ଆପଣଙ୍କର ଅଥଚ ପରି ଶିକ୍ଷିତ ପୁଅ, ମମତା ପରି ଝିଅ ଅଛି । ମୁଁ ଆପଣଙ୍କର ଆଉ ଗୋଟେ ପୁଅ ଅଛି । ଯାହା ଅସୁବିଧା ହେଉଛି ସଂକୋଚ ନରଖି କୁହନ୍ତୁ । ପୁଅ ପାଖରେ ମାଆର ଲଜ, ସଂକୋଚ କ'ଣ ?

କନକ : ସେ ଫେରି ଆସିଲେ ସବୁ ପୁଣି ଠିକ୍ ହୋଇ ଯାଆନ୍ତା ।

ମମତା : (ହାତରେ ଗୋଟିଏ ଖବରକାଗଜ ଧରି ଫେରିଲା) ନିଅ, ଏଇଠି ବାପାଙ୍କ ଫଟୋ ବାହାରିଚି ।

ଅଜିତ : (ଖବରକାଗଜ ନେଇ ଦେଖିଲେ ଓ ଭଙ୍ଗି କି ଧରିଲେ) ଆଚ୍ଛା ! ମୁଁ ଆସୁଚି ।

ମମତା : ତୁମେ କ'ଣ କାଲି ଷ୍ଟାର୍ଟ କରୁଚ ?

ଅଜିତ : ହଁ ।

କନକ : ତୁମ ବାପାଙ୍କୁ ଜଣେଇକି ଯିବ ଅଜିତ ।

ମମତା : ତାଙ୍କ ବାପାଙ୍କୁ ଜଣେଇବେ କ'ଣ ? ତାଙ୍କ ବାପା ତ ଏ ପ୍ରସ୍ତାବ ତାଙ୍କୁ ଦେଲେ ।

କନକ : ହଉ ପୁଅ, ମୁଁ ଆସୁଚି । (ପ୍ରସ୍ଥାନ)

ଅଜିତ : ବୋଉଙ୍କ ଆଗରେ ଏମିତି ମିଛ କହି ମତେ ହଇରଣ କରିବା ମାନେ ?

ମମତା : ଆଚ୍ଛା ! ଏଥର ତମେ ଦିଲ୍ଲୀ, କଲିକତା, ବମ୍ବେ ଯିବ ନା, ଯିବାର ଅଭିନୟ କରିବ ?

ଅଜିତ : କିନ୍ତୁ ମମତା ! ତମେ କାହିଁକି ବୁଝୁନା ଯେ......

ମମତା : କିନ୍ତୁ ଫିନ୍ତୁ କିଛି ନାହିଁ । ମୁଁ ଯାହା କହିଲି ସେଇଆ କର । (ମମତା ଅଜିତର ପିଠିରେ ମୁଣ୍ଡ ଲଗାଇ ଠେଲି, ଠେଲି ନେଲା । ) ଗୋ,-ଗୋ, ଗୋ ।

( ଗଲାବେଳେ ଅଜିତ ଦୁଷ୍ଟାମି କରି ମମତା ଉଠରେ ଖବରକାଗଜ ଛୁଆଇଁ ଦେଇଛି । ମମତା ହସି ଉଠିଚି । ଅଜିତ ଚାଲି ଯାଇଛି । ମମତା ତା'ର ଗତିପଥକୁ ଚାହିଁ ଠିଆ ହୋଇଛି । )



# ତୃତୀୟ ଦୃଶ୍ୟ

ଅବନିବାବୁଙ୍କ ବୈଠକ ଘର । କାନ୍ଥରେ ଅବନି-ବାବୁଙ୍କର ବଡ଼ ଫଟୋଟିଏ ଟଙ୍ଗା ହୋଇଛି । କନକ ସେଇ ଫଟୋକୁ ଚାହିଁଛନ୍ତି ।

କନକ : (ଅବନିବାବୁଙ୍କ ଫଟୋକୁ ଚାହିଁ) ତୁମ ମନରେ କ'ଣ ଏଇଆ ଥିଲା ? ମତେ ଏ ଦାଣ୍ଡ ମଝିଟାରେ ଏକୁଟିଆ ବସେଇ ଦେଇ ତୁମେ କୁଆଡ଼େ ଚାଲିଗଲ ? ତୁମ ପିଲା ଛୁଆ, ତୁମ ଘରଦ୍ୱାର ମୁଁ କେମିତି ସମ୍ଭାଳିବି ? ଝିଅଟାର ବାହାଘର ସାରି ଦେଇ ହେଲେ ଯୁଆଡ଼େ ଯିବାର ଯାଇ ଥାଆନ୍ତ ?
(କାନ୍ଦି ପକାଇଲେ)

ଅଥଚ : (ପ୍ରବେଶି) ବୋଉ !

କନକ : (ଆଖିରୁ ଲୁହ ପୋଛି ଅଥଚକୁ ଚାହିଁଲେ)

ଅଥଚ : ବ୍ୟାଙ୍କ ଚାକିରି ପାଇଁ ଗୋଟେ ଫର୍ମ ପକେଇଥାନ୍ତି ।

କନକ : (ତଥାପି କିଛି ନକହି କେବଳ ଅଥଚକୁ ଅନାଇଲେ)

ଅଥଚ : ଫର୍ମ ସାଙ୍ଗରେ ୫୦ ଟଙ୍କାର ବ୍ୟାଙ୍କ ଡ୍ରାପ୍ଟ ଦେବାକୁ ପଡ଼ିବ ।

କନକ : ମୋ ପାଖରେ ଟଙ୍କା କାହିଁ ? ତୋ ବାପା ଗଲା ଦିନଠୁ ପଇସାଟିଏ କୋଉଠୁ ଆସିବାର ନାହିଁ । ଯାହା ଯୋଉଠି ଥିଲା ସବୁ ସରିଲାଣି । ମୋ ସୁନା ଗହଣା ବି ବିକି ସରିଲାଣି । ମୋ ପାଖରେ ଆଉ କ'ଣ ଅଛି ଯେ ତତେ ଦେବି ?

ଅଥଚ : ମୁଁ ତାହେଲେ ପରୀକ୍ଷା ଦେବି ନେଇଁ ?

କନକ : ସାଇ, ପଡିଶା, ବନ୍ଧୁ ବାନ୍ଧବ ସମସ୍ତଙ୍କଠୁ ମୁଁ ଧାର କରଜ ଆଣି ସାରିଛି । ପରିବାଦୋକାନ ବାକି, ଚାଉଳଦୋକାନ ବାକି । (କଲିଂ ବେଲ୍ ବାଜିଲା) ଦେଖିଲୁ କିଏ ଆସିଲା ?

ଅଥଚ : (କବାଟ ଖୋଲିଲ । ତା ସାଙ୍ଗରେ ଘର ଭିତରକୁ ପଶି ଆସିଲେ ଗଗନବାବୁ । )
ନମସ୍କାର । ଆସନ୍ତୁ ।

କନକ : (ଥିଡ଼ ହୋଇ ଆର ଘରକୁ ଚାଲିଗଲେ । )

ଗଗନ : (ସୋଫା ଉପରେ ବସି) କ'ଣ ଅଥଚବାବୁ ! ସମୁଦିଙ୍କର କିଛି ଖବର ମିଳିଲ ?

ଅଥଚ : ନାହିଁ, ବହୁତ ଚେଷ୍ଟା କଲୁଣୁ, ବହୁତ ଆଡ଼େ ଖୋଜିଲୁଣୁ । କିଛି ଖବର ମିଳୁ ନେଇ । ଅଜିତବାବୁ ଫେରିଲେଣି ?

ଗଗନ : ହଁ, ଫେରିଲଣି । କିଛି ସନ୍ଧାନ ପାଇଲ ନାହିଁ ।
( ଚା ଆଣି ପ୍ରବେଶ କଲେ କନକ । ତାଙ୍କ ହାତରୁ ଗଗନବାବୁ ଚା' ନେଇ ପିଉ, ପିଉ )
ବସ ସମୁଦୁଣୀ ! ଆମ ଅଜିତ କଲିକତା, ଦିଲ୍ଲୀ, ବମ୍ବେ ସବୁ ଆଡ଼େ ଖୋଜି ଖୋଜି ଆସିଲ । ସମୁଦିଙ୍କର କିଛି ଖୋଜ ଖବର ମିଳିଲ ନାହିଁ ।

କନକ : ଆମେ ବି ଖୋଜି ଖୋଜି ଆଶା ଛାଡ଼ିଲୁଣୁ ।

ଗଗନ : ଏଇ...... ମୁଁ କ'ଣ କହୁଥିଲି କି ?

କନକ : ଆଉ କୋଉଠୁ କିଛି ଖବର ପାଇଚନ୍ତି କି ?

ଗଗନ : ନାହିଁ, ଏଇ...

ଅଥଚ : ଆମ ପାଖରେ ଆପଣ କିଛି ସଙ୍କୋଚ କରିବା କଥା ନୁହଁ । ଯାହା କହିବାକୁ ଚାହୁଁଚନ୍ତି କୁହନ୍ତୁ ।

କନକ : ହଁ,ସମୁଦି ଯାହା କହିବା କଥା କୁହନ୍ତୁ ।

ଗଗନ : ମୁଁ କହୁଥିଲି — ବାହାଘର ଆଉ ମାତ୍ର ମାସଟେ ରହିଲ ।

କନକ : ବାହାଘର ? କାହା ବାହାଘର ?

ଗଗନ : ଅଜିତ ସହିତ ଆପଣଙ୍କ ଝିଅ ମମତାର ବାହାଘର ।

କନକ : ଏମିତି ପରିସ୍ଥିତିରେ ଆମେ କେମିତି ବାହାଘର କରିବୁ ?

ଅଥଚ : ଆପଣ ଟିକେ ପରିସ୍ଥିତି ବୁଝିବାକୁ ଚେଷ୍ଟା କରନ୍ତୁ ।

ଗଗନ : ଆମର ନିର୍ବନ୍ଧ ହେଇଥିଲା ବୋଲି କହୁଛି । ଶୁଭ ଦିନଟା ଗଡ଼ି ଗଲେ ଆଉ ପୁଣି ସେମିତିଆ ଦିନଟେ କେବେ ଯୁଟିବ କି ନାହିଁ କିଏ କହିବ ?

ଅଥଚ : ବାପା ନ ଫେରିବା ପର୍ଯ୍ୟନ୍ତ ଆମେ ବାହାଘର କରି ପାରିବୁ ନାହିଁ ।

ଗଗନ : ତୁମ ବାପା କେବେ ଫେରିବେ କି ଜମା ଫେରିବେ ନାହିଁ ତାର କିଛି ସ୍ଥିରତା ନାହିଁ । ମୁଁ ଆଉ କେତେ ଦିନ ଅପେକ୍ଷା କରିବି ?

କନକ : ତୁମେ ଟିକେ ଆମ କଥା ବିଗ୍ଭର କର ସମୁଦି । ମୋର ପୁଅ ବାହାଘର ନୁହଁ, ଝିଅ ବାହାଘର ।

ଗଗନ : ଆମ ଅଜିତ ପାଇଁ ଆହୁରି ଅନେକ ଭଲ ଭଲ ପ୍ରସ୍ତାବ ଆସୁଛି; କିନ୍ତୁ ମୁଁ ଏଠି ଜବାବ ଦେଇଛି ବୋଲି ସେସବୁ ପ୍ରସ୍ତାବକୁ ଆଡ଼େଇ ଦଉଛି । କିନ୍ତୁ ମୁଁ କେତେ ଦିନ ଆଉ ଅପେକ୍ଷା କରିବି ? ଆଜି କାଲିକା ପିଲଙ୍କ କଥା ତୁମେ କ'ଣ ଜାଣିନା ? ସିଏ ଯଦି ତା ଗ୍ଭକିରି ଜାଗାରେ ଆଉ କାହାକୁ କଥା ଦେଇ ଦିଏ, ତାକୁ ମୋର ବଳ କ'ଣ ?

ଅଥଚ : ଆପଣ ଆଉ ମାସ ଗ୍ଭରିଟା ଅପେକ୍ଷା କରନ୍ତୁ । ବାପା ଫେରନ୍ତୁ କି ନ ଫେରନ୍ତୁ ଯାହା ଯେମିତି ବ୍ୟବସ୍ଥା କରି ଆମେ ବାହାଘରଟା କରି ଦେବୁ ।

( ବାହାରୁ ଆସିଛି ମମତା । ଗଗନବାବୁଙ୍କୁ ଦେଖି ନମସ୍କାର କରିଛି । )

ଗଗନ : ଅଇ ସୁଲକ୍ଷଣୀ ହୋ ମାଅ !

( ମମତା ଲଜେଇ ଯାଇ ଘର ଭିତରକୁ ଗ୍ଭଲିଯାଇଛି । )

କନକ : ଆମେ ତମ ବୋହୂକୁ ଆମ ଘରେ ବେଶୀ ଦିନ ଅଟକାଇ ରଖିବୁ ନାହିଁ । ଯେତେ ଶୀଘ୍ର ପାରିବୁ ସେତେ ଶୀଘ୍ର ତମ ଘରକୁ ଉଠେଇ ଦେଲେ ଆମର ଛୁଟି ।

ଗଗନ : ସମୁଦି ହଜିବା ଆଜିକି ଦି' ମାସ ହେଇ ଗଲଣି । ତାଙ୍କ ଫେରିବା ଆଶା ମତେ ଆଉ ଦିଶୁ ନାହିଁ । ଯାହା କରିବା କଥା ଶୀଘ୍ର ନିଷ୍ପତ୍ତି ନିଅ । ମୁଁ ଆଉ ଚାରିମାସ ଅପେକ୍ଷା କରି ପାରିବି ନାହିଁ ।

ଅଥଚ : ଦେଖୁଛନ୍ତି ଆମ କାହାର ମନ ସ୍ଥିର ନାହିଁ । ଏମିତି ପରିସ୍ଥିତିରେ ଆମେ ଏଇଲେ କେମିତି ବାହାଘର କରିବୁ ?

କନକ : ଆମକୁ ଆଉ କିଛି ଦିନ ମହଲତ ଦିଅ ସମୁଦି !

ଗଗନ : ମୁଁ ଆଉ ବେଶୀ ଦିନ ଅପେକ୍ଷା କରି ପାରିବି ନାହିଁ । ମୁଁ ଆଜି ଯାଉଚି । ଆଠ ଦିନ ଭିତରେ ତମେ ମନ ସ୍ଥିର କରି ତମ ଶେଷ ନିଷ୍ପତ୍ତି ଜଣାଇ ଦେବ ।

କନକ : ଏମିତି କ'ଣ ଯାଆନ୍ତି ସମୁଦି ? କିଛି ନଖାଇ ଚାଲିଗଲେ କଥା ଭଲ ହେବ ନାହିଁ ।

ଗଗନ : ଖାଇବା, ନ ଖାଇବାରେ କିଛି କଥା ନାହିଁ ସମୁଦୁଣୀ ! ଖାଇବା ଦିନ କ'ଣ କୁଆଡ଼େ ପଳେଇ ଯାଉଛି ? ବାହାଘର କରିବା ନ କରିବା କଥା ମତେ ଏଇ ଆଠ ଦିନ ଭିତରେ ଜଣେଇବ ।

( ଯିବାକୁ ଠିଆ ହେଲେ । )

କନକ : ଆମର ନିର୍ବନ୍ଧ ହୋଇ ସାରିଛି । ବାହାଘର କରିବା ନ କରିବା କଥା ଆଉ କ'ଣ ଜଣେଇବି ?

ଗଗନ : ଖାଲି ନିର୍ବନ୍ଧ କରି ଦେଲେ ତ ବାହାଘର ହୋଇଯାଏ ନାହିଁ । ଆର ମାସ ପନ୍ଦର ତାରିଖକୁ ବାହାଘର ଦିନ ଧାର୍ଯ୍ୟ ହୋଇଥିଲା । ଯଦି ସେଦିନ ବାହାଘର ନକରି ପାରିବ ତାହେଲେ ଆଉ କୋଉ ଦିନ କରିବ ସେକଥା ନିର୍ଦ୍ଦିଷ୍ଟ ଭାବେ ମୁଁ ଜାଣିବାକୁ ଚାହେଁ ।

କନକ : ହଉ, ଏଇ ମାସକ ଭିତରେ ମୁଁ ଖବର ଦେବି ।

ଗଗନ : ହଉ ତମରି କଥା ହେଉ । ମାସକ ଭିତରେ ଯଦି ନିର୍ଦ୍ଦିଷ୍ଟ ଜବାବ କିଛି ନପାଏ, ତାହେଲେ ମୁଁ ମୋ ପୁଅ ବାହାଘର

ଅନ୍ୟଠି କରିବି । (କେହି କହି ଗ୍ଲିଗଲେ)

(ଗଗନବାବୁଙ୍କ ଯିବା ବାଟକୁ ଗ୍ରହିଁ ରହିଲେ କନକ । ମମତା ଏଇ ସମୟରେ ଆସିଛି । ମାଆ ଓ ଭଇ ଦୁଃଖରେ ଠିଆ ହୋଇଥିବା ଦେଖି ପୁଣି ଘର ଭିତରକୁ ପେରି ଯାଉ ଯାଉ ଠିଆ ହୋଇଗଲ ।)

ଅଥଚ : ବାପା ଥିବା ବେଳେ ଏତେ ଦାୟିତ୍ୱ ସିଏ ନିଜେ ମୁଣ୍ଡେଇ ଥିଲେ, ମୁଁ ଏବେ ଜାଣୁଛି ।

ମମତା : ଜଣେ ଲେକ ମୁଣ୍ଡରେ ଏତେ ବୋଝ ଥିଲ ଏଇନେ ଆମେ ତିନି ଜଣ ତାକୁ ବାଣ୍ଟିକୁଣ୍ଟି ମୁଣ୍ଡେଇଛେ ତଥାପି ଆମ ସମସ୍ତଙ୍କ ବେକ, ଅଣ୍ଟା ଗ୍ଭଙ୍ଗି ପଡ଼ୁଛି ।

କନକ : ଏତେ ସବୁ କାମ କରିବାକୁ ଅଛି; କିନ୍ତୁ ଆମ ହାତରେ ଗୋଟେ ବୋଲି ପଇସା ନାହିଁ । ଏ ସହର, ବଜାର ଜାଗାରେ ଦିନକୁ ଅତି କମ୍‌ରେ ଶହେ ଟଙ୍କା ଦରକାର । ଆମର ଦିନକୁ ଶହେ ପଇସା ରୋଜଗାର ନାହିଁ ।

ମମତା : ମୁଁ ଭବୁଥିଲି......

କନକ : ତୁ କ'ଣ ଭବୁଛୁ ?

ମମତା : ଭଇକି ତ ଗ୍ଭକିରି ମିଳୁ ନେଇଁ, ମୁଁ ଗ୍ଭକିରି କରିବି ।

ଅଥଚ : ତୁ ଗ୍ଭକିରି କୋଉଠୁ ପାଇବୁ ?

ମମତା : ମୋ ସାଙ୍ଗ ମଧୁମିତା ଘର ଗୋଟେ ସୁନା ଅଳଙ୍କାର ଦୋକାନ ଅଛି । ଖୁବ୍ ବଡ଼ ଦୋକାନ । ତାଙ୍କର ଜଣେ ସେଲସ୍‌ମ୍ୟାନ ଦରକାର ବୋଲି ମଧୁମିତା କହୁଥିଲ ।

କନକ : ନା, ତୁ ଗ୍ଭକିରି କରିବା ଦରକାର ନାହିଁ । ତୋ ବାପା ଥିଲେ ଆଉ ଗୋଟେ ମାସ ପରେ ତୋର ବାହାଘର ହେଇ ଥାଆନ୍ତା । ତୁ ଏ ଅବସ୍ଥାରେ ଗହଣା ଦୋକାନରେ ଗ୍ଭକିରି କଲେ, ଗଗନବାବୁ ଆମକୁ କ'ଣ କହିବେ ? ତୁ ଆଉ ଝିଅ ହୋଇ ନାହୁଁ ଲେ ମାଆ । ଯୋଉ ଦିନଠୁ ନିର୍ବନ୍ଧ ସରିଛି ସେଇ ଦିନଠୁ ତୁ ତାଙ୍କର ବୋହୂ ହୋଇ ସାରିଛୁ । ଏବେ ତୁ

ଯାହା କରିବୁ ସେଥିପାଇଁ ତୋ ଶ୍ୱଶୁରଙ୍କ ଅନୁମତି ଦରକାର ।

( ପ୍ରବେଶ କଲେ ଅନନ୍ତବାବୁ )

ଅନନ୍ତ : ଅବନିବାବୁଙ୍କର କିଛି ସନ୍ଧାନ ମିଳିଲା ?

ଅଥଚ : ବସନ୍ତୁ ମଉସା ।

ଅନନ୍ତ : ( ଅନନ୍ତବାବୁ ବସିଲେ )

ଅଥଚ : ନାଇଁ ମଉସା କିଛି ସନ୍ଧାନ ମିଳୁ ନାହିଁ ।

କନକ : ଏବେ ସବୁ ଜାଗା ଖୋଜା ସରିଲଣି ।

ଅନନ୍ତ : ଘର ଚଳୁଛି କେମିତି ? ପଇସା ପତ୍ର କୋଉଠୁ ଆସୁଛି ?

କନକ : (ଦୀର୍ଘଶ୍ୱାସ ପକାଇ) ସେ କଥା କୁହନ୍ତୁ ନାହିଁ ଆଜ୍ଞା । ଧାର କରଜରେ ମୁଁ ପୋଚି ହେଇ ଗଲିଣି । ପ୍ରଥମେ ପ୍ରଥମେ ସାଇ, ପଡ଼ିଶା, ବନ୍ଧୁ ବାନ୍ଧବ ସହାନଭୂତି ଦେଖାଇ ଧାର କରଜ ଦେଉ ଥିଲେ । ଏବେ ସେତକ ବି ମିଳୁ ନାହିଁ । ତାଙ୍କ ଫେରିବାର ଆଶା ଯେତିକି ଯେତିକି ଦୂରେଇ ଯାଉଛି ଧାର, କରଜ ମିଳିବା ସେତିକି ସେତିକି କଷ୍ଟକର ହେଉଛି । ବରଂ କେତେକ ଲୋକ ଧାର ଦେଇଥିବା ଟଙ୍କା ଆମକୁ ମାଗିବାକୁ ଆରମ୍ଭ କଲେଣି । ମୁଁ ଆଉ ପାରୁ ନାହିଁ । ଅଥଚ ପାଇଁ ଆପଣଙ୍କ ଅଫିସ୍‌ରେ ଖଣ୍ଡେ ଚାକିରି ବୁଝନ୍ତୁ ।

ଅନନ୍ତ : ଆମ ଅଫିସ୍‌ରେ ଚାକିରି କାହିଁ ?

ଅଥଚ : ବାପାଙ୍କ ଜି. ପି. ଏଫ୍. ସ୍ଲିପ୍ ମୁଁ ଦେଖୁଥିଲି । ନବେ ହଜାର ଟଙ୍କା ଅଛି । ସେତକ ଉଠାଇ ପାରିଲେ ଆମେ ମମତାର ବାହାଘର କରନ୍ତୁ ।

ଅନନ୍ତ : ତୁମ ବାପା ବଞ୍ଚିଥିବା ଯାଏ ତୁମେ କି ତୁମ ମାଆ ସେ ଟଙ୍କା କେହି ଉଠାଇ ପାରିବେ ନାହିଁ ।

ମମତା : ଦରମା ମିଳିବା ପୂର୍ବ ଦିନ ବାପା ନିଖୋଜ ହୋଇଗଲେ । ସେ ମାସର ଦରମା ଟଙ୍କା ଆମକୁ ମିଳିବ ନା ନାହିଁ ?

ଅନନ୍ତ : ନା, ତୁମକୁ ଟଙ୍କାଟିଏ ବି ମିଳିବାର ସରକାରୀ ଆଇନରେ ବ୍ୟବସ୍ଥା ନାହିଁ । ଯେଉଁ ଲୋକ ଚାକିରିରେ ଥାଉ ଥାଉ ମରିଯାଏ ତା ସ୍ତ୍ରୀକୁ ପେନ୍‌ସନ୍ ମିଳେ, ପରିବାରରୁ ଜଣକୁ ଚାକିରି ମିଳେ । ତାର ଉତ୍ତରାଧିକାରୀଙ୍କୁ ଜି. ପି. ଏଫ୍. ଟଙ୍କା ମିଳେ । ତେଥି କମ୍ ରିଟାୟାରମେଣ୍ଟ ଗ୍ରାଚ୍ୟୁଇଟି ମିଳେ । ଗ୍ରୁପ୍ ଇନ୍‌ସୁରନ୍‌ସ ଟଙ୍କା ମିଳେ । କିନ୍ତୁ ଏମିତି ନିଖୋଜ ଲୋକର ପରିବାରର ଥଇଥାନ ପାଇଁ ସରକାରଙ୍କର କୌଣସି ବ୍ୟବସ୍ଥା ନାହିଁ ।

କନକ : ଏମିତି ଗୋଟେ ଅସୁବିଧାରେ ପକାଇ ସିଏ ଚାଲିଗଲେ ମୁଁ କ'ଣ କେମିତି କରିବି ? କିଛି ବୁଦ୍ଧି ବାଟ ଦିଶୁ ନାହିଁ ।

ମମତା : ଆଉ କ'ଣ କିଛି ଉପାୟ ନାହିଁ ମଉସା ?

ଅନନ୍ତ : ତୁମେ ତାହେଲେ ଗୋଟେ କାମ କର ଅଥଚ !

ଅଥଚ : କି କାମ ?

ଅନନ୍ତ : ତମେ ଆଜି ମୋ ସାଙ୍ଗରେ ଆମ ଅଫିସ୍‌କୁ ଆସ । ସେକ୍ରେଟାରୀଙ୍କୁ ସାକ୍ଷାତ କରି ତୁମ ଘରର ଅସୁବିଧା କଥା କୁହ ।

ଅଥଚ : ଆପଣ ତ କହୁଛନ୍ତି କିଛି ବ୍ୟବସ୍ଥା ନାହିଁ, କାହିଁକି ମିଛଟାରେ ଯିବି ?

ଅନନ୍ତ : ଆଇନ୍ ଅନୁସାରେ କିଛି କରିହେବ ନାହିଁ । ସହାନୁଭୂତି ଦେଖାଇ ସିଏ ଯଦି କିଛି......

ଅଥଚ : କ'ଣ କରି ପାରିବେ ?

କନକ : ତୁ ଯାଉନଉ ମଉସାଙ୍କ ସାଙ୍ଗରେ ।

ଅନନ୍ତ : ତୁମେ ଆସ । ଆମେ ଅଫିସ୍‌ରୁ କିଛି ଲୋକ ତୁମ ସାଙ୍ଗରେ ମିଶି ସେକ୍ରେଟାରୀଙ୍କୁ ତୁମ ପାଇଁ କହିବୁ । ଯଦି କିଛି ହୋଇ-ଯାଏ । କ'ଣ କହୁଚ ? ଯିବ ?

ମମତା : ଭାଇ ! ଯାଉନଉ ।

ଅନନ୍ତ : ଯିବ ଯଦି ମୋ ସାଙ୍ଗରେ ଆସ, ଅଫିସ୍ ବେଳ ହେଲଣି ।

ଅଥଚ : ହଉ ଚାଲନ୍ତୁ ।

( ଆଗ ପଛ ହୋଇ ଅନନ୍ତ ଓ ଅଥଚ ଗଲେ । କନକ ଓ ମମତା ସେମାନଙ୍କ ଯିବା ବାଟକୁ ଚାହିଁ ରହିଲେ । ମଞ୍ଚ ଅନ୍ଧକାର ହେଲା । )



# ଚତୁର୍ଥ ଦୃଶ୍ୟ

ଅବନିବାବୁଙ୍କ ଡ୍ରଇଂ ରୁମ୍ । ଗୋଟିଏ ବାଲ୍‌ଟିରେ କିଛି ପାଣି ଓ ଗୋଟିଏ ପାଣିଢ଼ାଳ ଧରି ଫୁଲକୁଣ୍ଡରେ ପାଣି ଦେବାକୁ ବାହାରିଛି ମମତା । ଏହି ସମୟରେ ଘର ଭିତରକୁ ପଶି ଆସୁଛନ୍ତି ଅଜିତ । ଦୁହିଁଙ୍କର ସାମନା ସାମନି ଭେଟ ହୋଇଗଲା । ସମୟ ଅପରାହ୍ନ ।

ମମତା : (ଅପ୍ରତିଭ ହୋଇ ବାଲ୍‌ଟି, ଢାଳ ଥୋଇ ଦେଇ ଶାଡ଼ି କାନିରେ ହାତ ପୋଛିଲା ।)

ଅଜିତ : ପାଣି ବାଲ୍‌ଟି ଧରି କୁଆଡ଼େ ବାହାରିଚ ?

ମମତା : ନାଇଁ... ଏଇ ଫୁଲ କୁଣ୍ଡଗୁଡ଼ିକରେ ଥିବା ଫୁଲ ଗଛଗୁଡ଼ାକ ଝାଉଁଳି ପଡ଼ିଲାଣି । ସେଥିରେ ପାଣି ଦେବା ପାଇଁ......

ଅଜିତ : ଏ ଗଛରେ ମନ୍ଦେ ପାଣି ଦିଅ ମମତା ! ଏ ଗଛଟାର ଚେର ଅନେକ ଦିନରୁ ଶୋଷିଲା ।

ମମତା : (ଲଜ ଲଜ ହୋଇ) ତମେ ଘରି ଭଏ..... ଏମିତି କ'ଣ କହୁଛ ?

ଅଜିତ : ଇଏ ଫିଏ କିଛି ନୁହଁ । ଦିଅ ଏ ଗଛରେ ମନ୍ଦେ ପାଣି ଦିଅ । ଏ ଗଛକୁ ସତେଜ, ସବୁଜ କର ।

(ହାତ ଆଞ୍ଜୁଳାରେ ପାଣି ପିଇବା ଉଦ୍ଦେଶ୍ୟରେ ଦୃଷ୍ଟାନ୍ତୀୟ କାଇଦାରେ ଆଣ୍ଠୁ ପକାଇ ପାଟି ପାଖରେ ଆଞ୍ଜୁଳା କରି ପାଣି ପିଇବାକୁ ଅପେକ୍ଷା କରି ରହିଲେ ।)

ମମତା : (କୃତ୍ରିମ କ୍ରୋଧ ପ୍ରକାଶ କରି) ଇଏ କ'ଣ ହଉଚି ? ଯଦି କିଏ ଦେଖିବନା......

ଅଜିତ : କିଏ ଦେଖିବ ?

ମମତା : କାନ୍ଥର ବି ଆଖି ଅଛି ।

ଅଜିତ : ମୁଁ ଚାହେଁ ଏମିତି ଏକ ଅଭିନବ ମୁଦ୍ରାରେ ମୋର ଫଟୋ ନିଆଯାଉ । ଯଦି ସେତକ ନହେଲା ତାହେଲେ ଅନ୍ତତଃ କିଏ ଜଣେ ଅଧେ ଦେଖୁ । ନଚେତ ମୋର ଏତେ ଅଭିନୟ ବିଫଳ ହୋଇଯିବ ।

ମମତା : (ଅଜିତଙ୍କ ହାତ ଧରି ଟାଣିଲା) ଏଥର ଉଠି ଆସ । ଅଭିନୟ ଢେର୍ ହେଲା । ତୁମେ ପରା ମୋ ବାପାଙ୍କୁ ଖୋଜିବାକୁ ଯାଇଥିଲ, କ'ଣ ହେଲା ?

ଅଜିତ : (ଠିଆ ହୋଇ ଆଣ୍ଠୁରୁ ଧୂଳି ଝାଡ଼ି) ମୋ ବାପା ଆସିଥିଲେ, ସିଏ କହିଥିବେ ନିଶ୍ଚୟ ?

ମମତା : ହଁ । ବାପା ଆସିଥିଲେ, କହିଛନ୍ତି । କିନ୍ତୁ······

ଅଜିତ : କିନ୍ତୁ ଆଉ କ'ଣ ମମତା ? ମୁଁ ଆଉ ଅଧିକ କ'ଣ କହିବି ? ଯଦି ତୁମେ କହିବ ତାହେଲେ ମୁଁ କେମିତି ଗଲି, କେମିତି ଖୋଜିଲି, କ'ଣ ଦେଖିଲି ଆଉ କେମିତି ଫେରିଲି ତାର ଗୋଟେ ଧାରା ବିବରଣୀ ପ୍ରଦାନ କରି ପାରେ । କ'ଣ କହୁଛ ? ଉଇଲ୍ ଆଇ ଷ୍ଟାର୍ଟ ?

ମମତା : ମୋର କିନ୍ତୁ ସନ୍ଦେହ ହେଉଛି······

ଅଜିତ : (ପୋଟିବା କଥା ଛଡ଼ାଇ) ମୁଁ ଆଦୌ କୁଆଡ଼େ ନଯାଇ ମନ୍ଦର/ କୋଡ଼ିଏ ଦିନ ପରେ ଫେରି ଆସି ମିଛରେ କହୁଛି—ତୁମ ବାପାଙ୍କୁ ଖୋଜିବା ପାଇଁ କଲିକତା, ଦିଲ୍ଲୀ, ବମ୍ବେ ଯାଇ- ଥିଲି । ବହୁତ ଖୋଜିଲି, ବହୁତ ଅନୁସନ୍ଧାନ କଲି । କିନ୍ତୁ କୋଉଠି ତାଙ୍କର ଖୋଜ ଖବର କିଛି ପାଇଲି ନାହିଁ । ଏଇୟା ନା ?

ମମତା : ଠିକ୍ ସେଇଆ ନହେଲେ ବି ସେହିପରି ବୋଲି ଧରି ନିଅ ।

ଅଜିତ : ସେଇଥି ପାଇଁ ମୁଁ କହୁଥିଲି ତମେ ମୋ ସାଙ୍ଗରେ ଚାଲ ।

ମମତା : ସେଇଟା ତାହେଲେ ମୋ ବାପାଙ୍କୁ ଖୋଜିବା ଟ୍ରିପ ହୋଇ ନଥାନ୍ତା । ସେଇଟାକୁ ଲୋକମାନେ ହନିମୁନ୍ ଟ୍ରିପ୍ ବୋଲି କହିଥାନ୍ତେ ।

ଅଜିତ : ମତେ ତମେ ବିଶ୍ୱାସ କର ମମତା ! ମୁଁ ଯାଇଥିଲି ଏବଂ ଖୁବ୍ ବିରିଅସ୍ଲି ସବୁ ସ୍ଥାନ ଖୋଜିଲି ।

ମମତା : ହଉ ହେଲା ବାବା ତମ କଥା ଠିକ୍ । ତମେ ବସ ମୁଁ ତମ ପାଇଁ ଚା' ଆଣେ । ( ଯିବାକୁ ଉଦ୍ୟମ କଲା )

ଅଜିତ : (ମମତାର ଶାଢ଼ି ଟାଣି ଧରି) ନାଇଁ, ମୋର ଚା' ଦରକାର ନାହିଁ । ତମେ ବସ ।

ମମତା : (ବସିଲା)

ଅଜିତ : ଆଖି ବୁଜ ।

ମମତା : କାହିଁକି ?

ଅଜିତ : ଆଖି ବୁଜ ପ୍ଲିଜ୍ ।

ମମତା : ବୁଜିଲି !

ଅଜିତ : ହାତ ବଢ଼ାଅ ।

ମମତା : ହେଲା ? (ହାତ ବଢ଼ାଇଲା)

ଅଜିତ : (ପକେଟ୍‌ରୁ କାନର ଦୁଲ୍ ହଳେ ବାହାର କରି ମମତାର ହାତରେ ଥୋଇଲେ । )
ଏଥର ଆଖି ଖୋଲ ।

ମମତା : ଆରେ ଇଏତ ସୁନ୍ଦର ଦୁଲ୍ ହଳେ । ଠିଏଲି ଭଳି ଫାଣ୍ଟାଷ୍ଟିକ୍ ହୋଇଛି । କୋଉଠୁ ଆଣିଲ ?

ଅଜିତ : ବମ୍ବେରୁ ।

ମମତା : ମେନି ଥ୍ୟାଙ୍କ୍‌ସ । ଆଚ୍ଛା, ଇଏତ ଗଲା ବମ୍ବେ ଯାଇଥିବାର ନମୁନା । କଲିକତା, ଦିଲ୍ଲୀ ଯାଇ ଥିବାର ପ୍ରମାଣ ସ୍ୱରୂପ ଆଉ କିଛି ଆଣିଛ କି ?

ଅଜିତ : ତଥାପି ତୁମର ଅବିଶ୍ୱାସ ହେଉଛି ?

ମମତା : ଏମିତି ଦୁଲ୍ କ'ଣ କଟକରେ ମିଳୁ ନାହିଁ ?

ଅଜିତ : ତାହେଲେ ତୁମେ ନିଶ୍ଚିତ ଯେ ମୁଁ ଆଦୌ କୁଆଡ଼େ ନଯାଇ···

ମମତା : ନା, ଅଜିତ ! ମୁଁ ଥଟ୍ଟାରେ କହିଦେଲି । ଠିଏଲି ତୁମର ଚଏସ୍

ଭରି ଚମତ୍କାର । (ଦୁଲ୍‌କୁ ଚାହିଁ)

ଅଜିତ : ମୋର ଆଉ ଗୋଟେ ଚଏସ୍ କିନ୍ତୁ ମୋ ବନ୍ଧୁମାନଙ୍କୁ ଈର୍ଷାନ୍ୱିତ କରିଛି ।

ମମତା : କି ଚଏସ୍ ?

ଅଜିତ : ତୁମେ ।

ମମତା : ମୁଁ ? ମୁଁ କ'ଣ ?

ଅଜିତ : ତୁମକୁ ମୋର ଲଇଫ ପାର୍ଟନର ଭବେ ଚଏସ୍ କରିଛି । ତୁମର ଫଟୋ ଦେଖି ମୋ ସାଙ୍ଗମାନେ ମୋତେ ଈର୍ଷା କରୁଛନ୍ତି ।

ମମତା : (ଲଜ ଲଜ ହୋଇ) ତା ମାନେ ତୁମ ସାଙ୍ଗମାନଙ୍କ ଆଖିରେ ମୁଁ ସୁନ୍ଦର ?

ଅଜିତ : ଏଟା ମୋର ମନଗଢ଼ା କଥା ନୁହଁ ମମତା ! ସତ କଥା । ଏଥିରେ ଟିକେ ହେଲେ ଅତିରଞ୍ଜନ ନାହିଁ ।

ମମତା : ମତେ ମଧ୍ୟ ମୋ ସାଙ୍ଗମାନେ ତୁମ କଥା କହି କମ୍ ଥଟ୍ଟା କରୁ ନାହାଁନ୍ତି ।

ଅଜିତ : ତା ମାନେ ତୁମ ସାଙ୍ଗମାନଙ୍କ ଆଖିରେ ମୁଁ ବି......
( ଦୁହେଁ ହସିଲେ )
ଆଚ୍ଛା ! ଆମକୁ ଆଉ କେତେ ଦିନ ଏମିତି ଅପେକ୍ଷା କରିବାକୁ ପଡ଼ିବ ?

ମମତା : ସେ କଥା ମୁଁ କେମିତି କହିବି ?

ଅଜିତ : ଆଉ କିଏ କହିବ ?

ମମତା : ବାପା ନଫେରିବା ପର୍ଯ୍ୟନ୍ତ କିଛି କରି ହେବ ବୋଲି ମୁଁ ଭବୁ ନାହିଁ । ବାପା ଗଲା ଦିନଠୁ ଆମ ଘରର ଆର୍ଥିକ ଅବସ୍ଥା ଦିନକୁ ଦିନ ଅଧିକ ଶୋଚନୀୟ ହେଉଛି । ଏଥିରେ ବାହାଘର କେମିତି ସମ୍ଭବ ହେବ ?

ଅଜିତ : ମୋ ବାପା ମତେ ଠିକ୍ ଏଇ କଥା କହୁଛନ୍ତି ।

ମମତା : ତୁମ ବାପା କ'ଣ କହୁଛନ୍ତି ?

ଅଜିତ : ବାପା କହୁଛନ୍ତି ତୁମ ଘରେ ବାହାଘର ସମ୍ଭବ ନୁହେଁ । ତୁମ ବାପା ଆଉ ଫେରିବାର ଆଶା ନାହିଁ ।

ମମତା : ଫେରିବାର ଆଶା ନାହିଁ ?

ଅଜିତ : ତୁମ ବାପା ହଜି ନାହାଁନ୍ତି, ଲୁଚିଛନ୍ତି ।

ମମତା : ଲୁଚିଛନ୍ତି ? ତୁମେ ଏ କ'ଣ କହୁଚ ଅଜିତ ?

ଅଜିତ : ଯୌତୁକ ଦେବାକୁ ପଡ଼ିବ ବୋଲି ଜାଣି ଶୁଣି ଫେରାର ହୋଇ ଯାଇଚନ୍ତି ।

ମମତା : (ରାଗିଯାଇ) ଅଜିତ ! ତୁମେ ଏତେ ମିନ୍ ?

ଅଜିତ : ଏକଥା ମୁଁ କହୁ ନାହିଁ; ମୋ ବାପା କହୁଛନ୍ତି ।

ମମତା : ତୁମ ବାପାଙ୍କ ବିଶ୍ୱର ଧାରା ଏତେ ନିମ୍ନ ମାନର ?

ଅଜିତ : ତୁମେ ମୋ ଉପରେ ଆଉ ବାପାଙ୍କ ଉପରେ ଅଯଥାରେ ରାଗୁଛ ? ତୁମ ବାପା ଯଦି ନିଜେ ଜାଣି ଶୁଣି ଲୁଚି ନାହାଁନ୍ତି ବୋଲି ତୁମର ଦୃଢ଼ ଧାରଣା, ତାହେଲେ ମୁଁ ଦୃଢ଼ କଣ୍ଠରେ କହିବି ତୁମ ବାପା ଆଉ ଜୀବନରେ ନାହାଁନ୍ତି ।

ମମତା : ଅଜିତ । (କାନ୍ଦ କାନ୍ଦ ହୋଇ)

ଅଜିତ : ଏମିତି ଘର ଦ୍ୱାର, ପିଲା ଛୁଆ ସଂସାର ଛାଡି କୌଣସି ଜୀବିତ ଲୋକ ଏତେ ଦିନ ପର୍ଯ୍ୟନ୍ତ ବାହାରେ ରହି ନପାରେ ।

ମମତା : ଅଜିତ । (କାନ୍ଦ କାନ୍ଦ ହୋଇ)

ଅଜିତ : ଏ ସତ୍ୟକୁ ତୁମକୁ ସ୍ୱୀକାର କରିବାକୁ ପଡ଼ିବ ମମତା !

ମମତା : (କାନ୍ଦ କାନ୍ଦ ହୋଇ) ନା, ଅଜିତ, ନା ! ମୋ ବାପା ଜୀବିତ । ସିଏ ଫେରିବେ, ନିଶ୍ଚୟ ଫେରିବେ ।

ଅଜିତ : ଏମିତି ଏକ ଅସମ୍ଭବ ଖିଆଲକୁ ନେଇ ତୁମେ, ତୁମ ଘର, ମାଆ ସାନ୍ତ୍ୱନା ପାଇ ପାର; କିନ୍ତୁ ଏଟା ସତ ନୁହଁ । ଏମିତି ଅନିଶ୍ଚିତ ପରିସ୍ଥିତିରେ ମୁଁ ଆଉ କେତେ ଦିନ ଅପେକ୍ଷା କରିବି ? ଏ ଅପେକ୍ଷାର ଶେଷ କେବେ ?

ମମତା : ତା ବୋଲି ମୋ ବାପା ବଞ୍ଚି ଥାଉଁ ଥାଉଁ ତାଙ୍କୁ ମୃତ ବୋଲି ଧରି ନେବାକୁ ତୁମେ ମୋତେ ବାଧ୍ୟ କରିବ ?

ଅଜିତ : ତୁମେ ତାହେଲେ କ'ଣ କହିବାକୁ ଚାହୁଁଛ ? ଏମିତି ଏକ ଅନିଶ୍ଚିତ କଥାକୁ ଅପେକ୍ଷା କରି ମୁଁ ମୋ ଜୀବନକୁ ନଷ୍ଟ କରିଦେବି ?

ମମତା : ନା, ଅଜିତ ! ତୁମ ଜୀବନଟା ନଷ୍ଟ କରି ଦେବାର ଅଧିକାର ମୋର ନାହିଁ । ତୁମେ ମୋତେ ଅପେକ୍ଷା ନକରି ଅନ୍ୟତ୍ର ବିବାହ କର ।

(ଏହି ସମୟରେ ପ୍ରବେଶ କରିଛି ଅଥଚ । ମମତା ଓ ଅଜିତ ଦୁହେଁ ଉତ୍ତେଜିତ । )

ଅଥଚ : ଆରେ ଅଜିତବାବୁ ଯେ, ଆପଣ କେତେବେଳେ ?

ଅଜିତ : (ଉତ୍ତେଜନାକୁ ଯଥା ସମ୍ଭବ ଚାପି) ଏଇ ଅଳ୍ପ ସମୟ ହେଲା ।

ଅଥଚ : ଠିଆ ହୋଇ ରହିଲେ କାହିଁକି ବସନ୍ତୁ ।

ଅଜିତ : ମୋର କାମ ଅଛି, ମୁଁ ଯାଉଛି ।

ଅଥଚ : କିଛି ଚା' ଜଳଖିଆ ନ ଖାଇ...... ଏମିତି ଚାଲି ଯିବାଟା ଠିକ୍ ହେବ ନାହିଁ ।

ଅଜିତ : ନା ଥାଉ । ସେ ସବୁ କିଛି ଦରକାର ନାହିଁ । (ପ୍ରସ୍ଥାନ)

ଅଥଚ : ମମତା !

ମମତା : ଭାଇ !

ଅଥଚ : ତୁ ଅଜିତଙ୍କୁ କ'ଣ କହିଲୁ ?

ମମତା : ମୁଁ ତାଙ୍କୁ କିଛି କହି ନାହିଁ ।

ଅଥଚ : ଯେତେ ହେଲେ ବି ସିଏ ତୋର ବାକ୍‌ଦତ୍ତ । ତାଙ୍କୁ ରାଗାଇବାଟା ତୋର ଠିକ୍ ହେଲା ନାହିଁ ।

ମମତା : ନାଇଁ ଭାଇ । ମୁଁ......

ଅଥଚ : ଏମିତି ଗୋଟେ ଭଲ କ୍ୟାଣ୍ଡିଡେଟ୍ ଆମକୁ ଆଉ ମିଳିବ ନାହିଁ । ତା ଛଡ଼ା ଆମ ଘରର ପରିସ୍ଥିତି ବର୍ତ୍ତମାନ ଯାହା,

ଆମକୁ ସମସ୍ତଙ୍କ ମର୍ଜି ଜଗି ଚଳିବାକୁ ପଡ଼ିବ ।

ମମତା : ତା ବୋଲି ତାଙ୍କ ମନକୁ ଯାହା ଆସିବ ସିଏ କହିବେ ମୁଁ ତାଙ୍କୁ କିଛି କହିବି ନାହିଁ ?

ଅଥଚ : ସିଏ ଏମିତି କ'ଣ କହିଲେ ଯେ ତୁ ତାଙ୍କ ମନରେ କଷ୍ଟ ଦେବା ପରି କଥା କହିଲୁ ?

ମମତା : ତାଙ୍କ ଇଚ୍ଛା ସିଏ ମତେ ବାହା ନହେଇ ପାରନ୍ତି, କିନ୍ତୁ ଆମ ବାପା ହଜି ନାହାଁନ୍ତି, ଲୁଚିଛନ୍ତି ନହେଲେ ମରିଯାଇଛନ୍ତି ବୋଲି କହିବାଟା······

ଅଥଚ : ସମସ୍ତେ ସେଇ କଥା କହୁଛନ୍ତି, ଆଉ ସିଏ କ'ଣ ଭୁଲ୍ କହିଲେ ?

ମମତା : ଉଇ ! ଶେଷରେ ତୁ ବି ସେ କଥା କହିଲୁ ?

(କନକ ବାହାରୁ ଫେରିଲେ । ତାଙ୍କ ହାତରେ ଭେଗ ଥାଳି)

କନକ : ଅଥଚ ! ଆମ ଘରୁ ସିଏ କିଏ ଗଲକି ? ଅଜିତ ପରି ଦିଶୁଚି ।

ଅଥଚ : ଅଜିତବାବୁ ଆସିଥିଲେ ।

କନକ : କିନ୍ତୁ ସିଏ ମତେ ଦେଖି ମୁହଁ ଲୁଚାଇ ଚାଲିଗଲେ । କ'ଣ ହେଇଚି ? ତାଙ୍କୁ କିଏ କ'ଣ କହିଲ ?

ମମତା : (କିଛି ନକହି ଆଉ ଘରକୁ ଚାଲି ଯାଉଥିଲା)

କନକ : ନେ ଭେଗ ନେ ।

ମମତା : (ଫେରି ଆସି ଭେଗ ନେଲା)

କନକ : ନେ, ତୁ ନେ ।

ଅଥଚ : (ଭେଗ ନେଲା)

କନକ : ତୁମେ ସବୁ ଅଜିତକୁ କ'ଣ କହିଲ ?

ଅଥଚ : ନାଇଁ ବୋଉ ! ମୁଁ କିଛି କହି ନେଇଁ । ମମତା କ'ଣ କହିଚି ।

ମମତା : (ଚାଲି ଯାଉଥିଲା)

କନକ : ତୁ କ'ଣ କହିଲୁ ମା ?

ମମତା : (କାନ୍ଦ କାନ୍ଦ ହୋଇ) ନାଇଁ, ମୁଁ ସେମିତି କିଛି କହି ନେଇଁ ।

କନକ : ତୁ କିଛି କହି ନାହୁଁ ତ ସିଏ ରାଗିକି ଚାଲିଗଲେ କାହିଁକି ?

ମମତା : (ନୀରବ ରହିଲା)

କନକ : ମୁଁ ପର ଘରେ ପଚାରୁଚି ତୁ ତାଙ୍କୁ କ'ଣ କହିଲୁ ବୋଲି ? ଘରେ କ'ଣ ଶୁଭୁନି ? ତୁ କ'ଣ କାଲୁଣି ହେଲୁଣୁ ?

ମମତା : (କାନ୍ଦି ପକାଇ) ହଁ, ହଁ ମୁଁ କାଲୁଣି ହେଲିଣି । ଅଜିତ କହିଲେ ତମ ବାପା ହଜି ନାହାଁନ୍ତି । ଯୌତୁକ ଦେବାକୁ ପଡ଼ିବ ବୋଲି ଲୁଚିଛନ୍ତି, ନହେଲେ ତମ ବାପା ଆଉ ଜୀବନରେ......

କନକ : (ରାଗିଯାଇ) ମମତା ! (କୋହ ଚାପି) ହଁ, ସମୟ ପଡ଼ିଚି ଯେତେବେଳେ ଯିଏ ଯାହା କହିବ ସହିବାକୁ ପଡ଼ିବ । (ଆଖିରୁ ଲୁହ ପୋଛି) ଅଥଚ ! ତୁ ପରା ବାପାଙ୍କ ଅଫିସ୍‌କୁ ଯାଇଥିଲୁ । କ'ଣ ହେଲା ? ଚାକିରି ମିଳିଲା ?

ଅଥଚ : ଚାକିରିଟା କ'ଣ ଆଳୁ ନା ବାଇଗଣ ହୋଇଚି ମିଳିଯିବ ?

କନକ : ଆଉ ଏତେ ଡେରି ହେଲା କାହିଁକି ?

ଅଥଚ : ସେକ୍ରେଟାରୀଙ୍କୁ ଅପେକ୍ଷା କରି କରି ଏତେ ଡେରି ହେଲା ।

କନକ : ସେକ୍ରେଟାରୀ କ'ଣ କହିଲେ ?

ଅଥଚ : ତାଙ୍କର ସେଇ ଗୋଟିଏ କଥା, ମୁଁ କିଛି ସାହାଯ୍ୟ କରି ପାରିବି ନେଇଁ ।

କନକ : ତୁ ତାଙ୍କୁ ଆମ ଘରର ଅସୁବିଧା କଥା କହିଲୁଟି ?

ଅଥଚ : ଏକୁଟିଆ ମୁଁ ନୁହଁ, ବାପାଙ୍କ ଅଫିସର ବାପାଙ୍କର ଆଠ, ଦଶ ଜଣ ସାଙ୍ଗ ସମସ୍ତେ ସେକ୍ରେଟାରୀଙ୍କୁ କହିଲେ । ସିଏ କହିଲେ, ମୁଁ ସବୁ ଅଭାବ ଅସୁବିଧା କଥା ଜାଣିଛି । ସାହାଯ୍ୟ କରିବାର କିଛି ବାଟ ନାହିଁ । କିନ୍ତୁ......

ମମତା : କିନ୍ତୁ କ'ଣ?

ଅଥଚ : (ନୀରବ)

କନକ : ସିଏ କ'ଣ କହିଲେ ?

ଅଥଚ : ସିଏ କହିଲେ—ମୋର ଧାରଣା ଅବନିବାବୁ ଆଉ ଫେରିବାର ଆଶା ନାହିଁ । ସିଏ ଯଦି ଜୀବିତ ଥାଆନ୍ତେ ନିଶ୍ଚୟ ଫେରି ଆସି ସାରନ୍ତେଣି ।

କନକ : ଛି ଛି...... ଏମିତି ଅଶୁଭ କଥା......

ଅଥଚ : ସିଏ ଆହୁରି କହିଲେ—ତୁମ ବାପାଙ୍କର ଡେଥ୍ ସାର୍ଟିଫିକେଟ୍ ଆଉ ଲିଗାଲ ହେୟାର ସାର୍ଟିଫିକେଟ୍ ଯୋଗାଡ଼ କରି ଆଣିଲେ ମୁଁ ସବୁ ପ୍ରକାର ସାହାଯ୍ୟ କରିବି ।

କନକ : ଏ ସବୁ ବନ୍ଦ କର ଅଥଚ । ଆମର ଚାକିରି ଦରକାର ନାହିଁ କି ଟଙ୍କା ପଇସା କିଛି ଦରକାର ନାହିଁ ।

ଅଥଚ : ସିଏ କହିଲେ—ଲିଗାଲ ହେୟାର ସାର୍ଟିଫିକେଟ ଆଣିଲେ ତୁମେ ସରକାରୀ ଚାକିରି ପାଇବ । ଜି. ପି. ଏଫ୍. ଟଙ୍କା ଉଠାଇ ପାରିବ । ଗ୍ରାଚ୍ୟୁଇଟି ଟଙ୍କା ପାଇବ । ଗ୍ରୁପ୍ ଇନ୍ସୁରାନ୍ସ ଟଙ୍କା ପାଇବ ।

କନକ : (ଚିତ୍କାର କରି ଅଥଚର ଗାଲରେ ଚାପୁଡ଼ା ମାରିଲେ) ଏ ସବୁ ମୋର କିଛି ଦରକାର ନାହିଁ, କିଛି ଦରକାର ନାହିଁ । (କାନ୍ଦିଲେ)

ମମତା : ଆମେ କେମିତି ଚଳିବା ବୋଉ ? ଏତେ ଧାର, ଉଧାର, କରଜ କେମିତି ସୁଝିବା ?

ଅଥଚ : ମମତାର ବାହାଘର କେମିତି କରିବା ? ସେମାନେ ବାରମ୍ବାର ଧମକ ଦେଉଛନ୍ତି ଅନ୍ୟ ଜାଗାରେ ବାହାଘର କରିବେ । ଏମିତି ଗୋଟେ ଭଲ ପ୍ରସ୍ତାବ ଆମ ହାତରୁ ଖସି ଗଲେ ଆମେ ଆଉ ପାଇବା ନାହିଁ ।

କନକ : ତା ବୋଲି ତୋ ବାପା ବଞ୍ଚି ଥାଉଁ ଥାଉଁ......

ଅଥଚ : ବାପା ଏପର୍ଯ୍ୟନ୍ତ ବଞ୍ଚିଛନ୍ତି ବୋଲି ଆମ ହାତରେ କିଛି ପ୍ରମାଣ ନାହିଁ ବୋଉ ! ଆମେ ତ ଏତେ ଖୋଜିଲେ । ସିଏ ଆଉ କୋଉଠି ରହିଲେ ? ବାପା ଯଦି ବଞ୍ଚିଥାନ୍ତେ ତାଙ୍କର ଖବର ମିଳି ସାରନ୍ତାଣି ।

ମମତା : ତା ଛଡ଼ା ବାପା ତ ଘରେ କାହା ସହିତ ଝଗଡ଼ା କରି ଯାଇ ନାହାନ୍ତି । ସିଏ ଏତେ ଦିନ ବାହାରେ ରହିବାର କିଛି କାରଣ ନାହିଁ । ଯଦି କୋଉଠି ଥାଆନ୍ତେ ତାହେଲେ ଘରକୁ ଫେରି ସାରନ୍ତେଣି ।

କନକ : ତୋ ମାମୁଙ୍କୁ ସେ ନଖଦର୍ପଣବାଲା କହୁଥିଲା—ତୋ ବାପା ଜୀବିତ ଅଛନ୍ତି । କିଛି ଗୋଟେ ବନ୍ଧନରେ ପଡ଼ି ଯାଇଛନ୍ତି । ଯେତେ ଚେଷ୍ଟା କଲେ ବି ଆସି ପାରୁ ନାହାଁନ୍ତି ।

ଅଥଚ : ନଖ ଦର୍ପଣ, ଜାତକ, ଖଡ଼ିପାଠ ସବୁ କେବଳ ମନକୁ କିଛି ଦିନ ସାନ୍ତ୍ୱନା ଦେବା ପାଇଁ ଗୋଟେ, ଗୋଟେ ବାଟ । ଏ ସବୁ କୌଣସି ବୈଜ୍ଞାନିକ ତଥ୍ୟ ଉପରେ ଆସ୍ଥା ରଖିବା ବୁଦ୍ଧିମାନ ଲୋକର କାମ ନୁହଁ ।

ମମତା : ବାପା ଜୀବିତ ଅଛନ୍ତି ଏ କଥାଟି ପ୍ରମାଣିତ କରିବା ପାଇଁ ଏତେ ଖୋଜା ଖୋଜି କରି ମଧ୍ୟ ଏପର୍ଯ୍ୟନ୍ତ କିଛି ହେଲେ ପ୍ରମାଣ ପାଇଲେ ନାହିଁ । ବାପାଙ୍କୁ ଖୋଜିବାରେ ଏତେ ଦିନ ଗଲାଣି । ଏତେ ଟଙ୍କା ଖର୍ଚ୍ଚ ହେଲାଣି । କିନ୍ତୁ କିଛି ହେଲେ ସନ୍ଧାନ ମିଳିଲା ନାହିଁ ।

ଅଥଚ : ବାପା ବଞ୍ଚି ଥିବାର କୌଣସି ଖବର ମିଳି ନାହିଁ । ବାପା ଏପର୍ଯ୍ୟନ୍ତ ବଞ୍ଚିଥିବା କଥା ଆମେ କେବଳ ଆଶା ରଖିବା ବ୍ୟତୀତ ଆମ ପାଖରେ ତାର ଆଉ କିଛି ପ୍ରମାଣ ନାହିଁ । କିନ୍ତୁ ଅନ୍ୟ ପକ୍ଷରେ କିଛି ଯୁକ୍ତିଯୁକ୍ତ ଓ ଗ୍ରହଣୀୟ ତଥ୍ୟ ମିଳିଛି ।

କନକ : କ'ଣ ମିଳିଛି ?

ଅଥଚ : କାହାକୁ କିଛି ନ ଜଣାଇ ଏତେ ଦିନ ପର୍ଯ୍ୟନ୍ତ ବାହାରେ ରହିବା ଜଣେ ଗୃହସ୍ଥ ଲୋକ ପକ୍ଷେ ସମ୍ଭବ ନୁହେଁ । ଝିଅର ନିର୍ଦ୍ଧାରିତ ବିବାହ ଦିନ ପାରି ହେବା ପର୍ଯ୍ୟନ୍ତ ବାହାରେ ରହିବା କୌଣସି ଜୀବିତ ବାପା ପକ୍ଷେ ସମ୍ଭବ ନୁହଁ । ବିନା ଦରଖାସ୍ତରେ ଏତେ ଦିନ ଚାକିରିରୁ ଅନୁପସ୍ଥିତ ରହିବା ବାପାଙ୍କ ପରି ଜଣେ ଅନୁଗତ ସରକାରୀ କର୍ମଚାରୀ ପକ୍ଷେ

ସମ୍ଭବ ନୁହଁ । ତା ଛଡ଼ା ବାପାଙ୍କ ପରି ଜଣେ ଲୋକ ଯିଏ କେବଳ ଘରୁ ଅଫିସ୍ ଓ ଅଫିସ୍‌ରୁ ଘର ବ୍ୟତୀତ ଆଉ କିଛି ଜାଣନ୍ତି ନାହିଁ, ସିଏ ଏତେ ଦିନ ଘର ଆଉ ଅଫିସ୍ ଦୁଇଟା-ଯାକୁ ଭୁଲି ବାହାରେ ରହିବା ସମ୍ଭବ ନୁହଁ ।

ମମତା : ବାପା କେବେ ଦିନେ, ଦୁଇ ଦିନରୁ ଅଧିକ ସମୟ ବାହାରେ ରହନ୍ତି ନାହିଁ । ଗାଆଁକୁ ଗଲେ ଶନିବାର ଯାଇ ରବିବାର ଫେରନ୍ତି ।

ଅଥଚ : ବାପାଙ୍କ ଅଫିସ୍ ଲୋକମାନେ କହୁଛନ୍ତି, ଅବନିବାବୁ ଘରେ ନଥିଲେ ଅଫିସ୍‌ରେ ଥିବେ । ଅଫିସ୍‌ରେ ନଥିଲେ ଘରେ ଥିବେ । ଘରେ ଆଉ ଅଫିସ୍‌ରେ ଏ ଉଭୟ ସ୍ଥାନରେ ନଥିଲେ ସିଏ ଆଉ କୋଉଠି ନଥିବେ ।

କନକ : ଅଭାବ ଅସୁବିଧାରେ ପଡ଼ି ତୁମେ ସବୁ ସ୍ୱାର୍ଥପର ପାଲଟି ଗଲଣି । ଟଙ୍କା, ପଇସା ଆଉ ଚାକିରି ପାଇବା ଆଶାରେ ତୁମେ ବାପାଙ୍କୁ ମୃତ ବୋଲି ମାନି ନେବାକୁ ତିଆରି ହୋଇ ଗଲଣି ।

ଅଥଚ : ନା, ବୋଉ ! ନିଷ୍ଠୁର ସତ୍ୟକୁ ଆମେ ଫାଙ୍କି ଦେଇ ପାରିବା ନାହିଁ ।

କନକ : ତମେ ସବୁ ମାନ, ମୁଁ ମାନିବି ନାହିଁ । ମୋ ମନ କହୁଛି ସିଏ ବଞ୍ଚିଛନ୍ତି । ସିଏ ଫେରିବେ, ନିଶ୍ଚୟ ଫେରିବେ ।
(ଏହି ସମୟରେ ପ୍ରବେଶ କରିଛି ମଦନ । ହାତରେ ଗୋଟିଏ ଖବରକାଗଜ । )

କନକ : ତୁ ଏମାନଙ୍କୁ ବୁଝା ମଦନ । ଏମାନେ ସବୁ କହୁଛନ୍ତି ତୋ ଭାଇ ଆଉ ଜୀବନରେ ନାହାନ୍ତି । ଏମାନେ ଆଜି ଖୁବ୍ ସ୍ୱାର୍ଥପର ହେଇ ଗଲେଣି । ଟଙ୍କା, ପଇସା, ଚାକିରି ଏମାନଙ୍କୁ ଅନ୍ଧ କରି ଦେଇଛି ।

ଅଥଚ : ନା, ମାମୁ ! ବୋଉ ଆମକୁ ଭୁଲ୍ ବୁଝୁଛି । ପ୍ରକୃତ ସତ୍ୟକୁ ସ୍ୱୀକାର କରିବାକୁ ସିଏ ଭୟ କରୁଛି ।

କନକ : ତମେ ତାଙ୍କୁ ଖୋଜି ନପାଇବାରୁ ତୁମ ବିଫଳତାକୁ

ଘୋଡ଼ାଇବା ପାଇଁ ବାପା ମରି ଯାଇଛନ୍ତି ବୋଲି ଧରି ନେଉଛ । ଏ ପୃଥିବୀର ସମସ୍ତେ ମତଲବୀ, ପୁଅ ଝିଅ, ବନ୍ଧୁ, ବାନ୍ଧବ ସମସ୍ତେ । (କୋହ ଚାପି) ମଦନ ! ତୁ ଏମାନଙ୍କୁ ବୁଝା । ଆରେ ତୁ ମୋ ମୁହଁକୁ ଏମିତି ବଲ୍‌ବଲ୍‌କି ଅନେଇଁଚୁ କାହିଁକି ? ଆରେ ତୋ ହାତରେ ସେଟା କ'ଣ ?

ମଦନ : (ଖବରକାଗଜଟାକୁ ଲୁଚାଇବାକୁ ଚେଷ୍ଟା କରି) ନାହିଁ... ଏଇ ଏଟା ଗୋଟେ ଖବରକାଗଜ ।

କନକ : ଏଥିରେ ତୋ ଭାଇଙ୍କ ଖବର ବାହାରିଚି କି ? ପଢ଼, ସିଏ କୋଉଠି ଅଛନ୍ତି ? କ'ଣ କରୁଛନ୍ତି ?

ମଦନ : (ନୀରବ)

କନକ : କିରେ ତାଙ୍କ ବିଷୟରେ କ'ଣ ଲେଖା ହେଇଚି ପଢ଼ ।

( ଅଥଚ, ମମତା ଓ କନକ ଖବରକାଗଜ ଉପରେ ଝୁଙ୍କି ପଡ଼ିଲେ । )

କନକ : ପଢ଼ ଅଥଚ !

ଅଥଚ : (ଖବରକାଗଜର ଏଣେ ତେଣେ ଆଖି ମକାଇ) ଅଚିହ୍ନା ଲୋକର ଶବ ।

କନକ }
ମମତା } ଶବ ? ( ଦୁହେଁ ଚମକି ପଡ଼ିଲେ )

ଅଥଚ : (ପଢ଼ିଲା) ଚିଲିକାଠାରୁ ୫ କିଲୋମିଟର ଦୂରରେ ଥିବା ଜଙ୍ଗଲରେ ଜଣେ ଅଚିହ୍ନା ଲୋକର ଶବ ପଡ଼ିଚି । ମୁହଁଟି ଦୁର୍ଘଟଣାରେ ଏପରି ବିକୃତ ହୋଇ ଯାଇଛି ଯେ ତାହା ମୋଟେ ଚିହ୍ନି ହେଉ ନାହିଁ । ମନେ କରା ଯାଉଛି କେହି ଜଣେ ଲୋକଟି ଉପରେ ମଟର ଚଢ଼ାଇ ଜଙ୍ଗଲ ଭିତରେ ଶବ ଫିଙ୍ଗି ଦେଇ ଚାଲି ଯାଇଛି । ଶବଟି ଦେହରେ ଚେକ୍ ସାର୍ଟ, କଳା ରଙ୍ଗର ପ୍ୟାଣ୍ଟ ଅଛି । ବାମ ହାତରେ କଳା ଡାଏଲ୍‌ର ଗୋଟିଏ ସିକୋ ଘଣ୍ଟା । ପାଦରେ ନାଲି ରଙ୍ଗର ଚପଲ । ଷ୍ଟିଲ୍ ଫ୍ରେମ୍‌ର ଚଷମାଟି ଭାଙ୍ଗି ଗୁଣ୍ଡ ହୋଇ ଯାଇଛି ।

ମମତା : ଇଏତ ବାପାଙ୍କ······

କନକ : (ଚିତ୍କାର କଲେ) ନା, ଏସବୁ ମିଛ । ଡାହା ମିଛ ।

ଅଥଚ : ଏ କଥା ସତ କି ମିଛ ଆମକୁ ନିଜ ଆଖିରେ ଦେଖି ଆସିବାକୁ ପଡ଼ିବ ।

ମମତା : ବାପା ଘର ଛାଡ଼ିବା ଦିନ ଏଇ ପୋଷାକ ପିନ୍ଧିଥିଲେ । ବାପାଙ୍କ ଘଣ୍ଟାର ଡାଏଲର ରଙ୍ଗ କଳା, ପାଦର ଚପଲ ନାଲି ରଙ୍ଗର, ଚଷମା ଷ୍ଟିଲ୍ ଫ୍ରେମ୍ର ।

କନକ : ମୋର କିନ୍ତୁ ମୋଟେ ବିଶ୍ୱାସ ଆସୁ ନାହିଁ । ଏମିତି ନାଲି ରଙ୍ଗର ଚପଲ, କଳା ରଙ୍ଗର ଘଣ୍ଟା, ଆଉ ଷ୍ଟିଲ୍ ଫ୍ରେମ୍ର ଚଷମା ପିନ୍ଧୁଥିବା ଲୋକ ଅନେକ ଅଛନ୍ତି ।

ମଦନ : କିନ୍ତୁ କଳା ପ୍ୟାଣ୍ଟ, ଚେକ୍ ସାର୍ଟ, ନାଲି ଚପଲ, କଳା ଘଣ୍ଟା, ଷ୍ଟିଲ୍ ଫ୍ରେମ୍ର ଚଷମା ଏ ସବୁ ଯାକ ଭାଇଙ୍କ ପୋଷାକ ସହିତ ମିଶି ଯାଉ ଥିବାରୁ ମତେ କେମିତି, କେମିତି ଲାଗୁଛି ।

କନକ : ସିଏ ଏଇଠି ଏଇ ପୁରୀ ଜିଲାରେ ଅଛନ୍ତି । ଆମେ ତାଙ୍କୁ ଏତେ ଖୋଜା ଖୋଜି କରି ପାଇଲେ ନାହିଁ ? ନା, ମୋ ମନକୁ ଏ କଥାଟା ମୋଟେ ପାଉ ନାହିଁ । ତା ଛଡ଼ା ତାଙ୍କର ଚିଲିକାରେ କି କାମ ? ସିଏ ଚିଲିକା ଆଡ଼େ କାହିଁକି ଯିବେ ?

ଅଥଚ : ଘର ଛାଡ଼ି ଚାଲି ଯାଇଥିବା ଲୋକ କୁଆଡ଼େ ଯିବ ଆଉ କୁଆଡ଼େ ନଯିବ, ସେ କଥା କିଏ କହିବ ?

ମଦନ : ଆମେ ଘରେ ବସି ଏ ବିଷୟରେ ନିଷ୍ପତ୍ତି ନେବାଟା ଠିକ୍ ହେବ ନାହିଁ । ଆମକୁ ସ୍ପଟ ଉପରକୁ ଯିବାକୁ ହେବ । ଏ ଶବଟା ଭାଇଙ୍କର କି ନା, ଚିହ୍ନଟ କରିବାକୁ ହେବ ।

ଅଥଚ : ବୋଉ ! ତୁ ଚାଲ ଚିହ୍ନିବୁ ।

କନକ : ଚିହ୍ନି ତ ହେଉ ନାହିଁ, ମୁଁ ଚିହ୍ନିବି କେମିତି ?

ମମତା : ତୁ ନଗଲେ କେମିତି ହେବ ?

ମଦନ : ଅଥଚ , ମମତା, ଦେଇ ସମସ୍ତେ ଚାଲ । ଆମେ ସମସ୍ତେ ଚିହ୍ନିବା ।

କନକ : ତମେ ସବୁ ଯା, ମୁଁ ଯିବି ନାହିଁ ।
ଅଥଚ : ତୁ ନଗଲେ ଆମେ କେହି ଯିବୁ ନାହିଁ ।
କନକ : ମୁହଁଟା ତ ଚିହ୍ନଛଡ଼ ହେଇ ଯାଇଛି । ମୁଁ ଯାଇ କେମିତି ଚିହ୍ନିବି ?
ମମତା : ପୋଷାକ ପତ୍ର, ଦେହ, ହାତ, ଗୋଡ଼......
କନକ : ନା, ପୋଷାକ ପତ୍ର କି ଦେହ, ହାତ, ଗୋଡ଼ ମଣିଷ ନୁହଁ । ସେଥିରୁ ମଣିଷକୁ ଚିହ୍ନି ହେବ ନାହିଁ ।
ଅଥଚ : ମଣିଷର ମୁହଁ କ'ଣ ତାହେଲେ ସବୁ ? ହାତ, ଗୋଡ଼, ଦେହର କ'ଣ କିଛି ହେଲେ ସ୍ୱତନ୍ତ୍ରତା ନାହିଁ ? ମୌଳିକତା ନାହିଁ ?
ମଦନ : ଭାଇଙ୍କ ଦେହଟାକୁ ଆମେ କ'ଣ ଚିହ୍ନି ପାରିବୁ ନେଇଁ ? ଭାଇଙ୍କ ଦେହରେ କୌଣସିଠାରେ କ'ଣ କିଛି ହେଲେ ବିଶେଷ ଚିହ୍ନ ନଥିଲ ?
କନକ : ନା, ସେମିତି କିଛି ବିଶେଷ ଚିହ୍ନ ତାଙ୍କ ଦେହରେ ନଥିଲ ।
ଅଥଚ : ମୁଁ ଭାବୁଚି, ଶବଟାକୁ ଦେଖିଲେ ଆମେ ଚିହ୍ନି ପାରିବା ।
ମଦନ : ଯିବା କଥା ଯଦି ଶୀଘ୍ର ଚାଲ । ଡେରି ହୋଇଗଲେ ଶବଟା ପଚି ସଢ଼ି ବିକୃତ ହୋଇ ଯାଇ ପାରେ । ଚାଲ୍ ଅଥଚ, ଚାଲ ମା ମମତା । ଆଉ ଅପା ତୁ ?
କନକ : ନା, ମୁଁ ଯିବି ନାଇଁ ।
ଅଥଚ : ତୁ ଆସୁନଇଁ ବୋଉ ?
କନକ : ନା, ତମେ ସବୁ ଯା ।
ମଦନ : ଆସ ଅଥଚ, ଆ ମମତା ।
(ମଦନ, ଅଥଚ, ମମତାଙ୍କର ପ୍ରସ୍ଥାନ )
କନକ : (ଅବନିବାବୁଙ୍କର ଫଟୋ ପାଖକୁ ଯାଇ ) ଶେଷରେ ତମ ପୁଅ, ଝିଅ ମଧ୍ୟ ବିଶ୍ୱାସ କଲେ ଯେ ତୁମେ କୁଆଡ଼େ ଆଉ ଜୀବନରେ ନାହଁ । ମୋ ମନ କହୁଛି ତମେ ଅଛ । ଯେଉଁଠି ହେଲେ ଅଛ । ( ଆଖିରୁ ଲୁହ ପୋଛିଲେ )

—ମଞ୍ଚ ଅନ୍ଧକାର—



# ପଞ୍ଚମ ଦୃଶ୍ୟ

ଅବନିବାବୁଙ୍କ ଘର । ମଞ୍ଚ ଆଲୋକିତ ହେବା ବେଳକୁ ଦେଖାଗଲା ଘରେ କେହି ନାହାଁନ୍ତି । ଦୁଃଖର ମିଉଜିକ୍ ବାଜୁଛି । ବାହାରେ କଲିଂ ବେଲ୍ ବାଜିଲା । କନକ ଆସି ଦ୍ୱାର ଖୋଲିଲା । ଘର ଭିତରକୁ ପଶି ଆସିଲେ ଅନନ୍ତ ।

ଅନନ୍ତ : ନମସ୍କାର ।

କନକ : ନମସ୍କାର ।

ଅନନ୍ତ : ଅଥଚ ଘରେ ନାହିଁ କି ?

କନକ : ନା ।

ଅନନ୍ତ : ଆଉ ମମତା ?

କନକ : ସିଏ ବି ନାହିଁ । ଆପଣ ବସନ୍ତୁ ।

ଅନନ୍ତ : (ବେସି ଆରି) ସେମାନେ ସବୁ କୁଆଡ଼େ ଯାଇଚନ୍ତି ?

କନକ : ଚିଲିକା ।

ଅନନ୍ତ : ଆପଣ ଗଲେ ନାହିଁ ? ସେମାନେ ଯେତେ ହେଲେ ପିଲା । ସେମାନେ କ'ଣ ଠିକ୍ ରୂପେ ଚିହ୍ନି ପାରିବେ ?

କନକ : ସେମାନଙ୍କ ସାଙ୍ଗରେ ତାଙ୍କ ମାମୁ ଯାଇଚି ।

ଅନନ୍ତ : ଯେତେ ଯିଏ ଗଲେ ବି ଆପଣ ଯିବାଟା ନିହାତି ଦରକାର ଥିଲା ।

କନକ : ମୁଁ ଯିବା ପାଇଁ ସେମାନେ ଜିଦ୍ କରୁଥିଲେ, ହେଲେ ମୋ ମନ ମୋଟେ ବଳିଲା ନାହିଁ । ମୋ ଗୋଡ଼ ହାତ ଖାଲି କାଠ, କାଠ ହେଲା ।

ଅନନ୍ତ : ଏ ଖବରଟା ପାଇ ଆମ ଅଫିସ୍ ଲୋକ ସମସ୍ତେ ମନ ଦୁଃଖ କଲେ । ଆଜି ଆମେ କେହି କାମ କରି ନାହୁଁ ।

କନକ : ମୋ ମନ କହୁଚି; ସିଏ ବଞ୍ଚିଛନ୍ତି ।

ଅନନ୍ତ : ଭଗବାନ କରନ୍ତୁ, ଏଟା ତାଙ୍କ ଶବ ନହେଉ ଥାଉ ।

କନକ : ସିଏ ଘରକୁ ନଫେରନ୍ତୁ ପଛକେ ଜୀବନରେ ଥାଆନ୍ତୁ ।

ଅନନ୍ତ : ହଁ, ହାଗା ବନସ୍ତରେ ବଢ଼ିଲେ ବି ଗଛାଙ୍କର । ଆଚ୍ଛା, ସେମାନେ କେତେବେଳୁ ଗଲେଣି ?

କନକ : କାଲି ଖରାବେଳୁ ।

ଅନନ୍ତ : (ହାତ ଘଣ୍ଟାକୁ ଦେଖି) ରାତି ଆସି ଦଶଟା ହେଲଣି । ଏପର୍ଯ୍ୟନ୍ତ କୁଆଡ଼େ ଗଲେ ?

କନକ : ମୁଁ ବି ସେଇଆ ଭାବୁଛି । କାଲି ରାତିରେ ଫେରିବା କଥା । ଆଜି ଆସି ରାତି ଏତେ ହେଲଣି । କ'ଣ କରିବି ମୁଁ କିଛି ଠିକ୍ କରି ପାରୁ ନାହିଁ ।

ଅନନ୍ତ : ସେମାନେ ଯଦି ଶବ ପୋଷ୍ଟମଟମ୍ ପର୍ଯ୍ୟନ୍ତ ଅପେକ୍ଷା କରିଥିବେ......

କନକ : ସେ ପର୍ଯ୍ୟନ୍ତ କାହିଁକି ରହିବେ ?

ଅନନ୍ତ : ପୋଲିସ୍‌ର ଗାରି ବଡ଼େ ଦାଡ଼ । ସେ ଯଦି ସନ୍ଦେହ କରି ଏମାନଙ୍କୁ ଥାନାରେ ବସେଇ ଥିବ ।

କନକ : ଏମାନଙ୍କୁ କାହିଁକି ଅଟକାଇବ ?

ଅନନ୍ତ : ଏଟା କ'ଣ ଛୋଟିଆ କଥା ? ମର୍ଡ଼ର କେଶ୍ । କ'ଣ ଗୋଟେ ଖିଅ ଯୋଡି ଏମାନଙ୍କୁ ଅଟକାଇବାଟା ପୋଲିସ୍ ପକ୍ଷେ ସେମିତି କିଛି ବିଚିତ୍ର ନୁହଁ ।

(ବାହାରେ ଗୋଟିଏ ମଟର ଗାଡ଼ି ରହିବାର ଶବ୍ଦ ହେଲା । ତଳକୁ ମୁହଁ ପୋତି ଘର ଭିତରକୁ ପଶି ଆସିଲା ମମତା । ମାଆକୁ ଦେଖି କଇଁ କଇଁ ହୋଇ କାନ୍ଦି ପକାଇଲା । )

କନକ : କ'ଣ ହେଲା ମାଆ ? (ମମତାକୁ ଛାତିକୁ ଆଉଜାଇ ନେଲେ । ମମତା କାନ୍ଦୁଥାଏ) ତୋ ମାମୁ ଆଉ ଭାଇ କୁଆଡ଼େ ଗଲେ ?

ମମତା : (କିଛି ନକହି ସେମିତି କାନ୍ଦିଲା । ବାହାରକୁ ହାତରେ ଇଙ୍ଗିତ ଦେଲା । )

ଅନନ୍ତ : ମୁଁ ଦେଖେ ସେମାନେ ବୋଧେ ଗାଡ଼ିରେ ଅଛନ୍ତି ।
(ବାହାରକୁ ଚାଲିଗଲେ)

କନକ : କ'ଣ ହେଲା କହୁନୁ ମାଆ ? ଏତେ ଡେରି କାହିଁକି ହେଲା ?

ମମତା : (କାନ୍ଦୁ କାନ୍ଦୁ କନକର ମୁହଁକୁ ଦୁଇ ହାତରେ ଚାପି ଧରି ବଡ଼ ପାଟିରେ କାନ୍ଦି ଉଠିଲା । )

କନକ : କ'ଣ ହେଲା ମାଆ ?

ମମତା : (କାନ୍ଦୁ କାନ୍ଦୁ ) ହଁ ବୋଉ ସେଇଟା ବାପାଙ୍କ ଶବ ।

କନକ : (କାନ୍ଦି ଉଠିଲେ) ନା, ନା, ଏସବୁ ମିଛ । ତୁ ମିଛ କହୁଛୁ । ମୋ ମନ କହୁଛି ସିଏ ବଞ୍ଚିଛନ୍ତି । ମୁଁ ଯିବି, ମୁଁ ନିଜ ଆଖିରେ ଦେଖିବି ।

ଅଥଚ : (ପ୍ରବେଶ କଲା ଓ ମୁଣ୍ଡ ତଳକୁ କରି ମାଆଙ୍କ ପାଖରେ ଠିଆ ହେଲା । ) ଆମେ ବାପାଙ୍କ ଶବକୁ ଏଠିକି ନେଇ ଆସିଛୁ ବୋଉ !

କନକ : କାହିଁ ? କୋଉଠି ?

ଅଥଚ : (ମୁହଁ ତଳକୁ କରି) ବାହାରେ ଗାଡ଼ିରେ ଅଛି ।

କନକ : (କାନ୍ଦି କାନ୍ଦି ବାହାରକୁ ଧାଇଁଲେ)

ମମତା : (କନକକୁ ଧରିଲା)

କନକ : ତୁ ମତେ ଛାଡ଼ ।

(କନକ ଟାଣି ଓଟାରି ହୋଇ ବାହାରକୁ ଚାଲିଗଲେ । ତାଙ୍କ ପଛେ ପଛେ କାନ୍ଦି କାନ୍ଦି ଗଲା ମମତା । ଅଥଚ ସୋଫା ଉପରେ ଲଥ୍ କରି ବସି ପଡିଲା । ବାହାରୁ ଆସିଲେ ଅନନ୍ତ । )

ଅନନ୍ତ : (ଆଲୋକର ପାଖରେ ବସି) ପୋଲିସ୍ ତୁମକୁ କିଛି ହଇରାଣ କଲା କି ?

ଅଥଚ : ପୋଲିସ୍ ଇନିସ୍‌ପେକ୍ଟର ମାମୁଙ୍କର ଚିହ୍ନା । ସିଏ ଆମକୁ ସାହାଯ୍ୟ କଲେ । ନହେଲେ ଆମେ ଆଜି ଆସି ପାରି ନଥାନ୍ତୁ ।

ଅନନ୍ତ : କ'ଣ ପୋଷ୍ଟମର୍ଟମ ହେଲ ?

ଅଥଚ : ହିଁଏତ କହୁଥିଲେ ସେମିତି ନେଇ ଯାଅ । କିନ୍ତୁ ମାମୁ ମନା କଲେ । ମାମୁ କହିଲେ ଡାକ୍ତର ପୋଷ୍ଟମର୍ଟମ ନକଲେ ଆମକୁ ଡେଥ୍ ସାର୍ଟିଫିକେଟ୍ ମିଳିବ ନାହିଁ । ଡେଥ୍ ସାର୍ଟିଫିକେଟ୍ ନ ମିଳିଲେ ସରକାରରୁ ଜିଛି ସୁବିଧା, ସୁଯୋଗ ମିଳିବି ନାହିଁ ।

ଅନନ୍ତ : ଠିକ୍ କରିଛ । ଡେଥ୍ ସାର୍ଟିଫିକେଟ୍ ତାହେଲେ ?

ଅଥଚ : ହଁ ।

ଅନନ୍ତ : ଆଉ ଡେରି କାହିଁକି କରୁଚ ପୁଅ ! ଶବ ଦାହ କରିବାର ବ୍ୟବସ୍ଥା କର ।

ଅଥଚ : ବୋଉ ଉଲକି ଚିହ୍ନି ସାରିବା ପରେ ଯାଇ……

ଅନନ୍ତ : ବୋଉ ଆଉ କ'ଣ ଚିହ୍ନିବେ ? ପୋଷ୍ଟମର୍ଟମ ହେଇ ସାରି-ଥିବା ଶବର କୋଉ ଅଂଶଟା ଆଉ ଅକ୍ଷତ ଅଛି ଯେ ସିଏ ଚିହ୍ନିବେ ? ତମେ ତ ଚିହ୍ନିଛ, ସେଇ ଯଥେଷ୍ଟ ।

ଅଥଚ : ଯେତେହେଲେ ବୋଉ ନଦେଖିଲେ ଶବ ଦାହ କରିବାଟା ଠିକ୍ ହେବ ନାହିଁ ।

ଅନନ୍ତ : ହଉ, ଏଥ ଉଠ । ବୋଉ କେତେବେଳୁ ଶବ ପାଖକୁ ଗଲେଣି । ସିଏ ଦେଖି ସାରିବେଣି ।

ଅଥଚ : ମୋ ପାଖରେ ମୋଟେ ପଇସା ନାହିଁ ମଉସା ! ଶବ ଦାହ କେମିତି ହେବ ? ମତେ ସବୁଆଡ଼ ଅନ୍ଧାର ଦିଶୁଚି ।

ଅନନ୍ତ : ନା, ଅଥଚ ! ଆଉ ଟଙ୍କା ପଇସାର ଅଭାବ ରହିବ ନାହିଁ । ଡେଥ୍ ସାର୍ଟିଫିକେଟ୍ ଦେଖାଇ ଲିଗାଲ ହେୟାର ସାର୍ଟିଫିକେଟ୍ କରାଇ ଆଣିଲେ ତୁମକୁ ଢ଼େର ପଇସା ମିଳିବ । ଗ୍ରୁପ୍ ଇନ୍‌ସୁରନ୍‌ସ ଟଙ୍କା ଆଉ ଗ୍ରାଚ୍ୟୁଇଟି ମିଳିବ ।

ଅଥଚ : ସେ ସବୁ ସିନା ପରେ ମିଳିବ । ଏଇନେ, ଏଇଘଡିରେ ଶବଦାହ ପାଇଁ ଟଙ୍କା ପଇସା କୋଉଠୁ ମିଳିବ ?

ଅନନ୍ତ : ତୁମେ ସେଥି ପାଇଁ ବ୍ୟସ୍ତ ହୁଅନା । ତୁମେ ଆଉ ସବୁ ଯୋଗାଡ଼ କର । ମୁଁ ଟଙ୍କାର ବ୍ୟବସ୍ଥା କରୁଛି । (ପ୍ରସ୍ଥାନ)

(ବୋଢ଼େଇ ହୋଇ କାନ୍ଦୁଥିବା କନକକୁ ମଦନ ଓ ମମତା ଦୁଇପଟରୁ ଧରି ଘରକୁ ଆଣିଲେ । କନକର ବାଳ ମୁକୁଳା । ମମତା ଓ ମଦନ ମଧ୍ୟ କାନ୍ଦୁଥିଲେ । ଏମାନେ ସବୁ କାନ୍ଦିବା ଦେଖି ଅଥଚ ମଧ୍ୟ କଇଁ କଇଁ ହୋଇ କାନ୍ଦି ଉଠିଛି । )



# ଷଷ୍ଠ ଦୃଶ୍ୟ

ଅଥଚ ଗୋଟିଏ ଷ୍ଟୁଲ ଉପରେ ଠିଆ ହୋଇ କାନ୍ଥରେ ଟଙ୍ଗା ହୋଇଥିବା ଅବନିବାବୁଙ୍କ ଫଟୋରେ ଫଲହାର ଦେଉଛି । ମମତା ତଳେ ଠିଆ ହୋଇ ଫୁଲହାରଟି ବଢ଼ାଇ ଦେଉଛି । ଫୁଲହାର ଦେଇ ସାରି କିଛି ଦୂରରେ ଠିଆ ହୋଇ ବାପାଙ୍କ ଫଟୋକୁ ଦୁହେଁ ଗ୍ରହିଁଲେ । ତାପରେ ସୋଫା ଉପରେ ବସି କଥାବାର୍ତ୍ତା ହେଲେ ।

ମମତା : ବୋଉ ପାଇଁ କ'ଣ ଆଉ କରିବା ? ମୋଟେ ଖାଉନେଇଁ । ସବୁବେଳେ ଶୋଇ ଶୋଇ କାନ୍ଦୁଚି ।

ଅଥଚ : ସ୍ୱାମୀ ମରିଗଲେ ସବୁ ସ୍ତ୍ରୀ ସେମିତି ଦୁଃଖ କରନ୍ତି ।

ମମତା : କିନ୍ତୁ ଏମିତି ଅଖିଆ, ଅପିଆ......

ଅଥଚ : ତୁ ତାକୁ ଟିକେ ବୁଝା ମମତା ! ସିଏ ଘରର ମୁରବୀ । ସିଏ ଯଦି ଏମିତି ଅଧୈର୍ଯ୍ୟ ହେବ ତାହେଲେ ଆମକୁ ଆଉ କିଏ ସାହସ, ବଳ ଦବ ? ବାପାଙ୍କ ଶ୍ରାଦ୍ଧ ଆଜିକି ଆଠ ଦିନ ହେଲ ସରିଲଣି । ଆଉ କେତେ ଦିନ ପର୍ଯ୍ୟନ୍ତ ସିଏ ଏମିତି ହବ ?

ମମତା : ସେ କଥା ସତ ଯେ, ହେଲେ ବୋଉ କଥାଟାକୁ ଗ୍ରହଣ କରିପାରୁ ନାହିଁ । ସିଏ ଏପର୍ଯ୍ୟନ୍ତ ଭବୁଛି ବାପା ଜୀବିତ ଅଛନ୍ତି । ସିଏ ହାତରୁ ଚୁଡ଼ି ଭଙ୍ଗୁ ନଥିଲ କି ମଥାରୁ ସିନ୍ଦୂର ପୋଛୁ ନଥିଲ । ଅନନ୍ତ ମଉସା ବୋଉକୁ ବୁଝାଇଲେ, ଏମିତି କେମିତି ହେବ ? ତମେ ଯଦି କଥାଟାକୁ ବିଶ୍ୱାସ ନକରିବ, ତାହେଲେ ସରକାର କେମିତି ବିଶ୍ୱାସ କରିବେ ?

( ପ୍ରବେଶ କଲେ ଅନନ୍ତବାବୁ )

ଅଥଚ : ବସନ୍ତୁ ମଉସା ।

( ଅନନ୍ତବାବୁ ବସିଲେ )

ଅନନ୍ତ : ମାଆ କୁଆଡ଼େ ଗଲେ ? ମୁଁ ତାଙ୍କ ପେନସନ୍ ପେପର ଆଣିଥିଲି । ତାଙ୍କର କେତେଟା ଦସ୍ତଖତ ଦରକାର ।

ଅଥଚ : ମମତା ! ବୋଉକୁ ଡାକି ଦେ ।

( ମମତାର ପ୍ରସ୍ଥାନ )

ମୋ ଚାକିରି କଥା କ'ଣ ହେଲା ମଉସା ?

ଅନନ୍ତ : ତୁମ ଚାକିରି ଏଇ ଆଠ ଦିନ ଭିତରେ ହେଇ ଯିବ ।

ଅଥଚ : (ଖୁସି ହୋଇ) ସତ କହୁଛ ମଉସା ?

ଅନନ୍ତ : ତୁମେ ଗ୍ରୁପ୍ ଇନ୍‌ସୁରନ୍‌ସ ୫୦ ହଜାର ଆଉ ଗ୍ରାଚ୍ୟୁଇଟି ୬୪ ହଜାର ଟଙ୍କା ପାଇଲ । ଟଙ୍କା ପଇସା ବୁଝି ବିଚାରି କାରବାର କରୁଥିବ ।

ଅଥଚ : ବାପାଙ୍କ ଶୁଦ୍ଧିରେ ଦଶ, ଏଗାର ହଜାର ଖର୍ଚ୍ଚ ହେଲା । ଆଉ ଦଶ, ବାର ହଜାର ଧାର, କରଜ ଶୁଝା ହେଲା । ବାକି ଟଙ୍କା ମୁଁ ବ୍ୟାଙ୍କରେ ଥୋଇ ଦେଇଚି ।

ଅନନ୍ତ : ତୁମ ବାପା ପରା ମମତାର ନିର୍ବନ୍ଧ କରି ଯାଇଛନ୍ତି ?

ଅଥଚ : ହଁ ।

ଅନନ୍ତ : ପିଲାଟି କ'ଣ କରୁଚି ?

ଅଥଚ : ବ୍ୟାଙ୍କରେ ଅଫିସର ଅଛି ।

ଅନନ୍ତ : ଶୀଘ୍ର ସେ କାମ ବଢ଼େଇ ଦିଅ ।

ଅଥଚ : ବୋଉ କିନ୍ତୁ ମୋତେ ମଙ୍ଗୁ ନେଇଁ ।

ଅନନ୍ତ : ମଙ୍ଗୁ ନାହାନ୍ତି କାହିଁକି ?

ଅଥଚ : ବୋଉ କହୁଛି ବାପାଙ୍କ ବର୍ଷିକିଆ ନଗଲେ ବାହାଘର କରଯାଏ ନାହିଁ ।

ଅନନ୍ତ : ସେ ସବୁ ପୁରୁଣା ନିୟମକୁ ଧରି ବସିଲେ କିଛି କରି ହେବ ନାହିଁ । ପୁରୋହିତଙ୍କୁ ପଚାରିଲେ ସିଏ ବାଟ ବତେଇ ଦେବେ । ମୁଁ ଶୁଣିଛି ଛ' ମାସିଆ ଶ୍ରାଦ୍ଧର ବ୍ୟବସ୍ଥା ଅଛି ।

ଅଥଚ : ତୁମେ ଟିକେ ବୋଉକୁ ବୁଝେଇ ଦିଅ ମଉସା ! ସିଏ ମୋ

କଥା ମୋଟେ ଶୁଣୁ ନେଇଁ ।

( ଚା’ କପ୍ ଧରି ପ୍ରବେଶ କରିଛି ମମତା । ତା ପଛରେ ଦୁଃଖରେ ଭାଙ୍ଗି ପଡ଼ିଥିବା କନକ ଖୁବ୍ ଗମ୍ଭୀର ଦେଖା ଯାଉଛନ୍ତି । )

ଅନନ୍ତ : ନମସ୍କାର ଭଉଜ !

କନକ : (ନୀରବରେ ପ୍ରତିନମସ୍କାର ଜଣାଇଲେ । )

(ଅନନ୍ତ ମମତା ହାତରୁ ଚା’ ନେଇ ପିଇଲେ । )

ଅଥଚ : ମଉସା ପେନ୍‌ସନ ପେପର ଆଣିଛନ୍ତି । ତୋ ଦସ୍ତକତ······

ଅନନ୍ତ : ଗୋଟେ ଦିଇଟା ଜାଗାରେ ଦସ୍ତକତ ଦରକାର ।

କନକ : (ନୀରବ)

ଅନନ୍ତ : (ବ୍ୟାଗ୍ ଖୋଲି ପେନ୍‌ସନ ପେପର ବାହାର କଲେ । )

ମମତା : ମଉସା ! ଚା’ଟା ଆଗ ସାରି ଦିଅନ୍ତୁ, ଥଣ୍ଡା ହେଇ ଯିବ ।

ଅନନ୍ତ : ମୁଁ ବେଶୀ ଗରମ ପିଇପାରେ ନାହିଁ । ଟିକେ ଥଣ୍ଡା ହେଲେ ଚଳିବ । (କନକ ପ୍ରତି) ଏଇଠି ଗୋଟେ, ଆଉ ଏ ପୃଷ୍ଠାରେ ଗୋଟେ । କଲମ ନିଅ ।

କନକ : (ନୀରବ ଓ ଗମ୍ଭୀର)

ଅନନ୍ତ : (ଚା’ ପିଉ ପିଉ) ଆଉ ତାହେଲେ, ମୁଁ ଆଉ କେତେବେଳେ ଆସି କରେଇ ନେବି ।

ଅଥଚ : ମତେ ଦିଅନ୍ତୁ ମଉସା ! ମୁଁ ବୋଉଠୁ ଦସ୍ତକତ କରେଇକି ଅଫିସ୍‌ରେ ଦେଇ ଆସିବି ।

( କନକ ଉଠିକି ଘର ଭିତରକୁ ଚାଲିଗଲେ । ତାଙ୍କ ସହିତ ମମତାର ପ୍ରସ୍ଥାନ । )

ଅନନ୍ତ : ମୁଁ ତାହେଲେ ଆଜି ଯାଉଛି ।

ଅଥଚ : ଆପଣ ଯାଆନ୍ତୁ ମୁଁ ସୁବିଧା ଦେଖି ବୋଉଠୁ ଦସ୍ତକତଟା କରେଇ ଦେବି ।

ଅନନ୍ତ : (ପେନ୍‌ସନ ପେପର ବାହାର କରି ଦସ୍ତକତ ଦରକାର ଥିବା

ସ୍ଥାନରେ ଚିହ୍ନ ଦେଲେ । ଏଇ ଦେଖ ଏଇ ଦ୍ୱିତୀୟ ପୃଷ୍ଠାରେ ଏ ଜାଗାରେ ଗୋଟେ, ଆଉ ଶେଷ ପୃଷ୍ଠାରେ ଏଇଠି ଗୋଟେ । ବୁଝି ପାରିଲ ତ ?

ଅଥଚ : (କାଗଜ ରଖିଲା) ହଁ । ଆଚ୍ଛା, ମଉସା କେତେ ଦିନ ଭିତରେ ଦେଲେ ଚଳିବ ?

ଅନନ୍ତ : ସେମିତି କିଛି ଡେଟ୍ ନାହିଁ । କିନ୍ତୁ ଶୀଘ୍ର ଦେଇ ଦେବାଟା ଭଲ । ମୁଁ ଆସୁଚି ।

ଅଥଚ : ନମସ୍କାର ମଉସା ।

ଅନନ୍ତ : ନମସ୍କାର ।



# ସପ୍ତମ ଦୃଶ୍ୟ

ଅବନିବାବୁଙ୍କ ବୈଠକ ଘର । ବସିଛନ୍ତି ଗଗନବାବୁ ଓ ମଦନବାବୁ । ଚା' ପିଉଛନ୍ତି । ଟିକେ ଛାଡ଼ି ବସିଛନ୍ତି କନକ । କନକଙ୍କ ମନ ଦୁଃଖ । ଚେହେରା ଗମ୍ଭୀର ।

ଗଗନ : ମୁଁ ଏତେ ଦିନ ଅପେକ୍ଷା କଲି ।,ଆଉ କେତେ ଦିନ ଅପେକ୍ଷା କରିବି ? ସବୁତ ସୁଧୁରିଲା । ଅଥଚବାବୁ ବାପାଙ୍କ ଅଫିସ୍‌ରେ ଚାକିରି ପାଇଲେ । ଟଙ୍କା ପଇସା ଯାହା ମିଳିବା କଥା ସବୁ ମିଳିଲା । ସମୁଦୁଣୀ ପେନ୍‌ସନ୍ ପାଇଲେ । ଆଉ କି ଅସୁବିଧା ଅଛି ?

କନକ : ତାଙ୍କର ବର୍ଷିକିଆ ନଗଲେ ବାହାଘର କରି ହେବ ନାହିଁ ।

ମଦନ : କ'ଣ କହୁଚ ସମୁଦି ! ଏତେ ଦିନତ ଅପେକ୍ଷା କଲଣି । ଆଉ ମାସ ଛଅଟା ଗଲେ ବର୍ଷିକିଆ ପଡ଼ିବ ।

ଗଗନ : ଛ' ମାସିଆ ଶ୍ରାଦ୍ଧ କରିବାର ତ କିଛି ଅସୁବିଧା ନାହିଁ । ପୁରୋହିତଙ୍କୁ ପଚାରିଲେ ସିଏ ସବୁ ବାଟ ବତେଇ ଦେବେ ।

କନକ : ସିଏତ ପଇସା ପାଇଲେ ମାସିକିଆ ଶ୍ରାଦ୍ଧ କରି ଦେବା ପାଇଁ ରାଜି ହେଇ ଯିବେ । ହେଲେ ଆମ ପିଲାମାନଙ୍କ ମଙ୍ଗଳ ବିଷୟ ଆମେ ଭାବିବା କଥା ।

ଗଗନ : ଆମର ଗୋଟେ ଅସୁବିଧା ଅଛି ସମୁଦୁଣୀ ! ବାହାଘରଟା ଆମକୁ ଯେମିତି ହେଲେ ଆର ମାସ ଭିତରେ ସାରିବାକୁ ପଡ଼ିବ ।

କନକ : କି ଅସୁବିଧା ?

ଗଗନ : ଆର ମାସଟା ଡେଇଁ ପଡ଼ିଲେ ଆମ ଅଜିତର ଜନ୍ମ ମାସ ।

ମଦନ : ଜନ୍ମ ମାସ ହେଲେ କ'ଣ ହେଲା ?

ଗଗନ : ତାଙ୍କୁ ଯୋଡ଼ା ବଅସ ପଶିବ । ତାକୁ ଅଠେଇଶ୍ ବର୍ଷ ହେବ । ଯୋଡ଼ା ବଅସରେ ବାହାଘର କରି ହେବ ନାହି । ଆଉ ମାସରେ ବିଭଘର ନକଲେ ଆମକୁ ଆହୁରି ଗୋଟେ ବର୍ଷ ଅପେକ୍ଷା କରିବାକୁ ପଡ଼ିବ ।

( ପ୍ରବେଶ କରିଛି ଅଥଚ । )

ଅଥଚ : ନମସ୍କାର ।

ଗଗନ : ନମସ୍କାର ।

ଅଥଚ : ଆପଣ କେତେବେଳୁ ଆସିଲେଣି ? ମୋର ଅଫିସ୍‌ରେ ଟିକେ ଡେରି ହେଇଗଲା ।

ଗଗନ : ନାଇଁ, ମୁଁ ଏଇ ଅଳ୍ପ ସମୟ ହେଲା ଆସିଲି । ବସ ପୁଅ । ସମୁଦୁଣୀ କହୁଛନ୍ତି ତୁମ ବାପାଙ୍କ ଶ୍ରାଦ୍ଧ ଯାଏ ଅପେକ୍ଷା କରିବାକୁ । କିନ୍ତୁ ଆଉ ଦି' ମାସ ପରେ ଅଜିତକୁ ଯୋଡ଼ା ବଅସ ପଶିବ । ଆସନ୍ତା ମାସରେ ତିଥୀ ଅଛି । ଯଦି ବାହାଘର ନହୁଏ, ଆଉ ବର୍ଷେ ଯାଏ ବାହାଘର ହୋଇ ପାରିବ ନାହିଁ ।

ମଦନ : ଅଫିସ୍‌ରେ ବାପାଙ୍କ ସାଙ୍ଗମାନେ କହୁଛନ୍ତି, ଛ ମାସିଆ ଶ୍ରାଦ୍ଧ କରି ଦେଇ ବାହାଘର କରି ଦେବାକୁ । ଏମିତି ଅନେକ ବାହାଘର ହେଇଚି । ମୋର କିଛି କହିବାର ନାହିଁ । ମୁଁ ରାଜି । ଆପଣ ବୋଉକୁ ଆଉ ମାମୁଙ୍କୁ ବୁଝାନ୍ତୁ ।

ଗଗନ : ବୁଝାବୁଝିରେ କଥା ନାହିଁ । ଅକାଳେ ନିୟମ ନାସ୍ତି । ସର୍ବ ମଙ୍ଗଳ ଜଗନ୍ନାଥ କରି ବାହାଘରଟା କରିଦେବା । ତେଣିକି ଭଲ ମନ୍ଦକୁ ଜଗନ୍ନାଥ ଭରସା ।

କନକ : ମୁଁ କହୁଥିଲି ବେଳଟା ଏଇନେ ଭଲ ନାହିଁ । ହଠାତ୍ ସିଏ ଘର ଛାଡ଼ି ଚାଲିଗଲେ । ତା'ର ଦିନ କେଇଟା ଯାଇନାହିଁ ଦୁର୍ଘଟଣା । ଏମିତି କାଳବେଳାଟାରେ ବାହାଘର ପରି ଶୁଭ କାମଟା କରିବାକୁ ମୋ ମନ ବଳୁନାହିଁ ।

ଅଥଚ : ସେ ସବୁ ପୁରୁଣା କାଳିଆ ଅନ୍ଧ ବିଶ୍ୱାସ । ଯା ଭିତରେ କ'ଣ କିଛି ଭଲ ଘଟଣା ଘଟି ନାହିଁ ?

କନକ : କ'ଣ ଭଲ ଘଟଣା ଘଟିଛି ?

ଅଥଚ : ମତେ ଚାକିରି ମିଳିଛି । ମମତା ଏମ୍. ଏ. ରେ ଫାଷ୍ଟକ୍ଲାସ ପାଇଲା ।

କନକ : ଏଇଟା କ'ଣ ଶୁଭ ଘଟଣା ? ବାପାଙ୍କ ଜାଗାରେ ସରକାର ତତେ ଚାକିରି ଦେଲେ । ତୁ ନିଜ ଚେଷ୍ଟାରେ ଯଦି ପାଇଥାନ୍ତୁ ତାହେଲେ ମୁଁ ମାନିଥାନ୍ତି ଶୁଭ ବୋଲି । ଆଉ ମମତା ପଢ଼ି ଥିଲା । ସିଏ ଆଶା କରୁଥିଲା ପରୀକ୍ଷାରେ ଭଲ କରିବ ବୋଲି, ଭଲ କଲା ।

ଅଥଚ : ସବୁ କଥାକୁ ଯୁକ୍ତିରେ କାଟି ଦିଆ ଯାଇପାରିବ । ତୁ ଯଦି ରାଜି ନୁହଁ, ବାହାଘର ନକର ।

ମଦନ : ନା, ଏମିତି ଯୁକ୍ତି ତର୍କରେ କିଛି ସମାଧାନ ହୁଏ ନାହିଁ ।

ଗଗନ : ମୁଁ ଢେର ଅପେକ୍ଷା କଲେଣି । ସମୁଦି ହଜିଲେ ସେଥିପାଇଁ ଚାରିମାସ ଅପେକ୍ଷା କଲି । ସମୁଦିଙ୍କ ଶୁଦ୍ଧିକ୍ରିୟା ହେଲା, ସେଥିପାଇଁ ଅପେକ୍ଷା କଲି । ସମୁଦିଙ୍କ ଛମାସିଆ ଶ୍ରାଦ୍ଧକୁ ବି ଅପେକ୍ଷା କରିବି । ତା ପରେ ଆପଣ ଯଦି ଆସନ୍ତା ମାସରେ ବାହାଘର କରିବାକୁ ରାଜି ନହୁଅନ୍ତି, ମୋର ଶେଷକଥା ମୁଁ ଅନ୍ୟ ଜାଗାରେ ବାହାଘର କରିବି । ( ଉଠି ଠିଆ ହେଲେ )

ଅଥଚ : ହଁ, ଆପଣ ଅନ୍ୟ ଜାଗାରେ ବାହାଘର କରନ୍ତୁ, ଆମେ ଆଉ ଛମାସ ନଗଲେ ବାହାଘର କରି ପାରିବୁ ନାହିଁ । ( ଉଠି ଚାଲି ଯିବାକୁ ବାହାରିଲା । )

ମଦନ : କିରେ ଅଥଚ ! ତୁ ଏମିତି କ'ଣ ହେଉଛୁ ? ( ଗଗନବାବୁଙ୍କ ହାତକୁ ଟାଣି) ବସ ସମୁଦି, ଏମିତି ରାଗିଲେ କ'ଣ ଚଳିବ ? ( କନକ ପ୍ରତି ) ବୁଝିଲୁ ଅପା ! ଏଇନା ବରଘର ଠିକ୍ ହେଇଚି, ସରକାରରୁ ଟଙ୍କା ପଇସା ମିଳିଛି । ଲଗ୍ନ ବି ଅଛି । ଏତେ ସବୁ ଯୋଗାଯୋଗ ଠିକ୍ ଅଛି । କେବଳ ଯାହା ସେଇ ଗୋଟିଏ କଥା ବର୍ଷକିଆ ଯାଇ ନାହିଁ । ଆମେ ସେଇ ଗୋଟାକୁ ଧରି ବସିଲେ ଅନ୍ୟସବୁ ସୁବିଧା ହାତରୁ ଖସିଯିବ ।

କନକ : ତମ ସମସ୍ତଙ୍କର ଯଦି ଇଚ୍ଛା ବାହାଘର କରିନିଅ । ମୋ କଥାରେ କ'ଣ ଅଛି ?

ମଦନ : ନାଇଁ, ତୁ ସେମିତି ଅଭିମାନିଆ କଥା କହନା ।

କନକ : ମୁଁ ଆଉ କାହା ପାଖରେ ଅଭିମାନ କରିବି ?

ମଦନ : ତୁ ଟିକେ ଭଲ ମନରେ ହଁ ମାରିଲେ ଆମେ ଜବାବ ଦେବୁ । କ'ଣ କହୁଛୁ ଅଥଚ ?

ଅଥଚ : ବାହାଘର ହବ କି ନହବ, ଏବର୍ଷ ହବକି ଆସନ୍ତା ବର୍ଷ ହବ, ସେ·କଥା ବୋଉକୁ ପଚାରି ତୁମେ ନିଷ୍ପତ୍ତି କର । ବାପା ନାହାଁନ୍ତି, ତୁମେ ଆମର ପିତୃତୁଲ୍ୟ । ତୁମେ ବେଦି ଉପରେ ବସି କନ୍ୟାଦାନ କରିବ । ମୁଁ କେବଳ କାମ କରିବା କଥା ।

ଗଗନ : କ'ଣ କହୁଚ ମନଖୋଲି କୁହ ସମୁଦୁଣୀ !

କନକ : ହଉ, ବାହାଘର ଆର ମାସରେ ହେବ । ଜ୍ୟୋତିଷ ଡାକି ଦିନ ବାର ଠିକ୍ କରିବା ।

ଗଗନ : ସେ ସବୁ କାମ ମୁଁ ସାରି ଦେଇଚି । ଖାଲି ତୁମରି 'ହଁ' କୁ ଅପେକ୍ଷା ଥିଲା ।

କନକ : କେବକୁ ଲଗ୍ନ ସ୍ଥିର କରିଛ ?

ଗଗନ : ଆସନ୍ତା ମାସ ବାର ତାରିଖ, ବୁଧବାର ।

କନକ : ଆଉ କେତେ ଦିନ ରହିଲା ?

ମଦନ : ଆଜିତ ୨୦ ତାରିଖ । ଏମାସର ଆଉ ଦଶଦିନ, ଆର ମାସର ବାରଦିନ । ଏମିତି ୨୨ ଦିନ ରହିଲା ।

କନକ : ଏତେ କମ୍ ଦିନରେ······

ମଦନ : ନାଇଁ ସମୁଦି, ଆମର ଝିଅ ବାହାଘର କଥା । ଆମେ କେତେ ଜିନିଷ କିଣା କିଣି କରିବୁ । ଆହୁରି ପୁଣି ଛ'ମାସିଆ ଶ୍ରାଦ୍ଧ କରିବୁ । ଆଉ କିଛି ଦିନ ଘୁଞ୍ଚେଇ ଦିଅ ।

ଅଥଚ : ଆସନ୍ତା ମାସ ଶେଷ ଆଡ଼କୁ ଭଲ ଦିନ ନାହିଁ ?

ଗଗନ : ଆସନ୍ତା ମାସ ୨୬ ତାରିଖକୁ ବି ଘୁଞ୍ଚିଛି ।

ଅଥଚ : ତାହେଲେ ସେଇ ୨୬ ତାରିଖକୁ ଧାର୍ଯ୍ୟ କରନ୍ତୁ ।

ଗଗନ : କ'ଣ କହୁଚ ସମ୍ମୁଦୁଣୀ ?

କନକ : ଆଉ ଘୁଞ୍ଚେଇ ହବ ନେଇଁ ?

ଗଗନ : ନା, ତେଣିକି ଆଉ ଘୁଞ୍ଚେଇ ହବ ନେଇଁ । ତା ଆର ମାସକୁ ଅଜିତର ଜନ୍ମମାସ, ଯୋଡ଼ା ବଅସ ।

ମଦନ : ହଉ ତାହେଲେ ସେଇ ୨୬ ତାରିଖ ହେଲା ।

ଗଗନ : ମୁଁ ତାହେଲେ ଆସୁଛି ।

କନକ : ଏତେ ଡେରି ହେଲାଣି, ଆଜି ରହିଯାଉନା ।

ଗଗନ : ନାଇଁ, ସିଆଡ଼େ ଘରେ ବାହାଘର କଥା ଶୁଣିବାକୁ ସମସ୍ତେ ଅନେଇ ବସିଥିବେ । ମୁଁ ଆଜି ଏଠି ରହିବା ଭଲ ହେବନେଇଁ । ଏଣିକିତ ଏଟା ମୋ ଘର । ରହିବା ଦିନ କ'ଣ ପଳେଇଲା ? ମୁଁ ଯାଉଚି ସମ୍ମୁଦୁଣୀ ନମସ୍କାର ।

କନକ : ନମସ୍କାର ।

ମଦନ, ଅଥଚ : ନମସ୍କାର ।

ଗଗନ : ନମସ୍କାର ।

(ସମସ୍ତେ ଠିଆହୋଇ ଗଗନବାବୁଙ୍କୁ ବିଦାୟ ଦେଲେ । ମଞ୍ଚ ଧୀରେଧୀରେ ଅନ୍ଧକାର ହେଲା । )



# ଅଷ୍ଟମ ଦୃଶ୍ୟ

ଅବନିବାବୁଙ୍କ ଘର । ସମୟ ସନ୍ଧ୍ୟା । ମଞ୍ଚ ଆଲୋକିତ ହେବାବେଳକୁ ଦେଖାଗଲା ମମତା ବସିଛି । ଟେପ୍‌ରୁ ଆଧୁନିକ ସଙ୍ଗୀତର ସ୍ୱର ଭାସି ଆସୁଛି । ମମତା ସେଇ ଗୀତ ସହିତ ମଜ୍ଜି ଯାଇଛି । ଗୋଟିଏ ନୂଆ ଟିଭି ଧରି ଆସିଛି ଅଥଚ । ଦୁଆର ମୁହଁରେ ଟିଭିଟିକୁ ରିକ୍‌ସାରୁ ଓହ୍ଲାଇ ମମତାକୁ ଡାକିଛି ।

ଅଥଚ : ମମତା ! ମମତା ! ( ବାହାରେ ଥାଇ ଡାକିଛି )

(ମମତା କିଛି ଉତ୍ତର ନଦେବାରୁ ଅଥଚ ଭିତରକୁ ଆସିଛି । ଟେପ୍‌ରୁ ଗୀତ ଶୁଣୁଥିବା ଦେଖି ହଠାତ୍ ଯାଇ ଟେପ୍‌ଟାକୁ ବନ୍ଦ କରି ଦେଇଛି ।)

ମମତା : ( ଚମକି ପଡ଼ି ) କ'ଣ ହେଲା ? ( ହସିଦେଇ) କାହିଁକି ବନ୍ଦ୍ କଲୁ ?

ଅଥଚ : ତୁ ଟେପ୍ ଲଗେଇ ଗୀତ ଶୁଣୁଚୁ , ମୁଁ ଡାକି ଡାକି ଥକିଲିଣି ।

ମମତା : କାହିଁକି ଡାକୁଥିଲୁ ?

ଅଥଚ : ଆସିଲୁ ଟିକେ । ( କହି କହି କବାଟ ପାଖକୁ ଗଲେ )

ମମତା : କୁଆଡ଼େ ?

ଅଥଚ : ଏଇଠିକି ଆସୁନଇଁ । (ବାହାରକୁ ଚାଲିଯାଇ) ଧର ଟିଭିଟାକୁ ଭିତରକୁ ନେବା ।

ମମତା : ( ଟିଭିର ଗୋଟେ କଣରୁ ଟେକିଲା ) ନାଇଁ ହଉ ନେଇଁ ।

ଅଥଚ : କିଲୋ ହୁଣି ଦି'ପଟରୁ ଧଅ ।

ମମତା : (ଟିଭି ଥୁଡି ଦେଇ) ବୋଉ ! ଏ ବୋଉ ! ଦେଖିଲୁ ତୋ ପୁଅ ମତେ କେମିତି ହୁଣି କହୁଚି ।

ଅଥଚ : (ମାରିବାକୁ ହାତ ଉଠାଇ) ଧରୁଚୁ ନା ଏଇଲେ ଦେଖୁବୁ ?
କନକ : ( ପ୍ରବେଶି ) କିରେ, କିରେ ଅଥଚ ! ସିଏ କ'ଣ ହଉଚି ? ଏତେବଡ ଝିଅଟାକୁ ତୁ ମାରିବୁ ? ତୋରତ ଭରି ସାହସ ।

( ମମତା କନକର ପଛପଟେ ଲୁଚିଲା )

ଅଥଚ : ତା ଶାଶୁ ଘରକୁ ସିଏ ଟି.ଭି ନବ । ଟି.ଭିଟା ଏ ଦୁଆର ମୁହଁରୁ ଘରକୁ ଧରିକି ନବାକୁ ମନା କରୁଚି ।

ମମତା : ଦେଖୁଲୁ ବୋଉ ! ଭାଇ ମତେ କେମିତି ଚିଡ଼ାଉଚି ?

ଅଥଚ : ମୁଁ ଚିଡେଇଲି କୋଉଠି ? ତୁ କ'ଣ ଟି. ଭି ନବୁ ନେଇଁ ?

ମମତା : ସେମିତି କହିଲେ ମୁଁ ମୋର ପଳେଇବି ଜାଣିଥା ।
( ପଳେଇଲା )

କନକ : ମମତା ! ମମତା ! ଆରେ ଶୁଣ୍ ।

ଅଥଚ : ମମତା !

କନକ : ସିଏ ଯାଉ, ମୁଁ ଧରୁଚି ।

ଅଥଚ : ନାଇଁ, ବୋଉ ! ତୁ ଧରି ପାରିବୁ ନେଇଁ ।

କନକ : ଏଇଠି ଟିକେ ଅଣ ଆଡ଼ିକି ଥୋଇଦେବା ଧର ।

ଅଥଚ : ହଉ ଧର ।

( ଦୁହେଁ ଟି.ଭି କୁ ଦୁଆର ମୁହଁରୁ ଉଠାଇ, ଗୋଟେ କଣକୁ ଥୋଇଦେଲେ ।) ହଁ, ଏଇଠି ଥାଉ, ମୁଁ ଆଉ କାହାକୁ ଡାକି ସେ ଘରକୁ ନେଇଯିବି ।

କନକ : ବାହାଘର ଆଉ ମୋଟେ ଦିନ ପାଞ୍ଚଟା ରହିଲା । ତୋ ମାମୁକୁ କହିଥିଲି ଆଜି ଆସିବାକୁ । ଏ ଯାଏଁ ଆସିଲା ନେଇଁ । ସମସ୍ତଙ୍କୁ ନିମନ୍ତ୍ରଣ ଦେଇ ସାରିଲୁଣି ?

ଅଥଚ : ହଁ ।

କନକ : ବନ୍ଧୁ ବାନ୍ଧବ ସମସ୍ତଙ୍କୁ ପଠେଇଛୁ ?

ଅଥଚ : ସମସ୍ତଙ୍କ ପାଖକୁ ଡାକରେ ପଠେଇ ସାରିଛି ।

କନକ : ତୁ କାଲି ଗାଆଁକୁ ଯା । ତୋ ଦାଦା, ଆଉ ବଡ଼ବାପାଙ୍କ ଘରକୁ ନିଜେ ଯାଇକି ଡାକିଦେଇ ଆସିବୁ । ଗାଆଁରେ ଦୁଇ

ତିନିଘର ସୂର୍ଯ୍ୟବନ୍ଧୁ ଅଛନ୍ତି । ତାଙ୍କୁ ନିମନ୍ତ୍ରଣ ଦବୁ ।

ଅଥଚ : ମୁଁ ତ କାଲି ଗାଆଁକୁ ଯିବି, ତୁ ପରା କହୁଥିଲୁ ବାହାଘର ଜିନିଷ କ'ଣ କିଣିବୁ ବୋଲି ? ଯଦି କିଣିବୁ ସାଙ୍ଗେ ସାଙ୍ଗେ ବାହାର । ମମତା ଯଦି ଯିବ ତାକୁ କହ ବାହାରୁ ।

କନକ : ତୁ ଗାଆଁକୁ ଗଲେ ଜିନିଷ କିଏ କିଣିବ ? ଆଜିସବୁ କିଣି ଦେବା । ମମତା ନଗଲେ ତା ଶାଢ଼ି, ବାକ୍ସ, ଘଣ୍ଟା କିଏ କିଣିବ ?

ଅଥଚ : ତାକୁ ତାହେଲେ କହ, ଜଲ୍‌ଦି ବାହାରୁ ।

କନକ : ସୁନା ଅଳଙ୍କାର କିଣିବା କଥା । ତୋ ମାମୁ ଆମ ସାଙ୍ଗରେ ଯାଇଥାନ୍ତା । ସିଏତ ଏ ଯାଏ ଆସିଲା ନେଇଁ ।

ଅଥଚ : ମାମୁ ନ ଆସିଲେ ନାହିଁ, ଅମେ କିଣି ଆଣିବା । ତୁ ଶୀଘ୍ର ବାହାର ।

( କନକ ଭିତରକୁ ଗଲେ । ଅଥଚ ପକେଟ୍‌ରୁ ଗୋଟଏ ଲିଷ୍ଟ୍ ବାହାର କରି ସେଥିରେ କ'ଣ ଲେଖିଲା । )

ବୋଉ ! କ'ଣ ସଇଲ ?

କନକ : (ଘର ଭିତରୁ) ଯାଉଚି, ଯାଉଚି ।

ଅଥଚ : ତାଲାଟେ ଆଣିଥିବୁ । ବାହାରେ ତାଲା ପକେଇ ଦେଇଯିବା ।

କନକ : ନଉଚି ।

( କନକ ଓ ମମତା ଆସିଲେ । ବଜାର ଯିବା ପାଇଁ, ଭଲ ଶାଢୀ ପିନ୍ଧିଛନ୍ତି । କନକ ଅଥଚ ହାତରେ ତାଲାଟେ ଦେଲେ)

ନେ ଧର । ମୁଁ ଘର ଲାଇଟି ଲିଭାଇ ଦେଉଚି ।

ମମତା : ମାମୁ ପରା ଆସିବେ ବୋଲି କହିଥିଲେ । ଆମେ ବଜାରକୁ ଗଲାପରେ ମାମୁ ଯଦି ଆସିବେ ? ଏ ଥଣ୍ଡାରେ ସିଏ କୋଉଠି ରହିବେ ?

ଅଥଚ : ତାଲା ପକେଇ ଦେଇ, ଚାବି କାଠିଟା ଫୁଲକୁଣ୍ଡ ତଳେ ଥୋଇ ଦେବା ।

କନକ : ଫୁଲକୁଣ୍ଡ ତଳେ ଚାବିକାଠି ଅଛି ବୋଲି ସିଏ କେମିତି ଜାଣିବେ ?

ମମତା : ହଁ, ମୋର ମନେ ଅଛି, ଥରେ ଭାଇ କଲେଜ ଯାଇଥିଲା ମୁଁ ମୋ ସାଙ୍ଗ ଘରକୁ ଯାଇଥିଲି । ବାପାଙ୍କର ତୋର ଥରେ ଘରେ ତାଲା ପକେଇ ଚାବିକାଠି ଫୁଲକୁଣ୍ଡ ତଳେ ଥୋଇଦେଇ ବଜାର ଯାଇଥିଲ । ମାମୁ ଆସିଲେ, ଏପଟ ସେପଟ ଖୋଜା ଖୋଜି କରି ଫୁଲକୁଣ୍ଡ ତଳୁ ଚାବିକାଠି ନେଇ ଘର ପିଟାଇ ବସିଥିଲେ ।

କନକ : ହଁ, ମନେ ପଡ଼ିଲା । ହଉ ତାହାଲେ ଚାଲ ଫୁଲକୁଣ୍ଡ ତଳେ ଚାବି କାଠି ଥୋଇ ଦେଇକି ଯିବା ।

ଅଥଚ : ହଉ, ଆ ମମତା ।

(ତିନିଜଣ ଯାକ ଘର ବନ୍ଦକରି ବଜାର ଗଲେ । )

— ମଞ୍ଚ ଅନ୍ଧକାର ହେଲା —



# ଶେଷ ଦୃଶ୍ୟ

ରାତି ପ୍ରାୟ ଏଗାରଟା । କନକ, ଅଥଚ ଓ ମମତା ବିଭାଘର ପାଇଁ ଜିନିଷପତ୍ର କିଣାକିଣି କରି ବଜାରରୁ ଫେରୁଛନ୍ତି । ଦୁଇ ତିନିଟା ବାକ୍ସ ଓ ଆହୁରି ଅନେକ ଜିନିଷ ଆଣିଛନ୍ତି । ସେମାନେ ଘରେ ପହଞ୍ଚିବା ପୂର୍ବରୁ ଘର ଖୋଲା ହୋଇଛି ଓ ଆଲୁଅ ଜଳୁଥିବାର ଦେଖି ସମସ୍ତେ ଭାବିଲେ ବୋଧହୁଏ ମଦନ ଆସିଛନ୍ତି ।

ମମତା : ମାମୁ ବୋଧେ ଆସିଚନ୍ତି ।

କନକ : ମୁଁ ପରା କହୁଚି ମଦନ ଆସିବ ।

ଅଥଚ : ଚାବି କାଠିଟା ଥୋଇ ଦେଇ ଯାଇଥିଲେ ବୋଲି ନହେଲେ ଶୀତଟାରେ ମାମୁ ହଇରଣ ହୋଇଥାନ୍ତେ ।

(ଜିନିଷପତ୍ର ସବୁ ଖଟ ଉପରେ ଓ ଟିପୟ ଉପରେ ଥୋଇ ଦେଲେ । )

ମାମୁ ! ମାମୁ ! ମାମୁ କାହାଁନ୍ତି ?

ମମତା : ଆର ଘରେ ଥିବେ ।

କନକ : କିରେ ଜିନିଷପତ୍ର ଏ ଘରେ କାଇଁକି ଥୋଇଲ ? ଆର ଘରକୁ ଉଠା । ( ଆର ଘରକୁ ଗଲେ । )

ଅଥଚ : (ଖଟ ଉପରେ ବସିପଡି) ମମତା ଜିନିଷଗୁଡ଼ାକ ନେଇ ଯା, ମତେ ଭାରି ହାଲିଆ ଲାଗିଲାଣି ।

ମମତା : ତତେ ହାଲିଆ ଲାଗିଲା, ମତେ ହାଲିଆ ଲାଗିବ ନେଇଁ ?

ଅଥଚ : ଯାହା ବାହାଘର ପାଇଁ ଜିନିଷ କିଣା ହୁଏ, ତାକୁ କ'ଣ ହାଲିଆ ଲାଗେ ?

ମମତା : ବୋଉ ! ଦେଖିଲୁ, ଭାଇ ମତେ କେମିତି ଚିଡ଼ାଉଚି ।

ଅଥଚ : କଥା ଅପ୍ରିୟ ହେଲେ ବି ସତ ।

ମମତା : ବେଶୀ ଗୋଟେ ଫୁଲେଇ ହୋନା । ମାମୁଙ୍କୁ ଶୁଭିବ ।

ଅଥଚ : ମାମୁ କୁଆଡ଼େ ଗଲେ ? ବୋଉ ।

କନକ : (ଘର ଭିତରେ ଥାଇ) କ'ଣ କିରେ ?

ଅଥଚ : ମାମୁ ସେ ଘରେ ଅଛନ୍ତି ?

କନକ : କାଇଁ, ନାଇଁ ତ ? ( ଆର ଘରେ ଥାଇ )

ମମତା : ମାମୁ ତାହେଲେ କୁଆଡ଼େ ଗଲେ ?

ଅଥଚ : ବାଥରୁମ୍‌କୁ ଯାଇଥିବେ ।

ମମତା : ( ଘର ଭିତରକୁ ଗୁହିଁଦେଇ ) କାଇଁ ନାହିଁତ । ବାଥରୁମ୍‌ଟା ଖୋଲା । ତା ଭିତରେ କେହି ନାହିଁ ।

ଅଥଚ : ଏଇଠି କୋଉ ପଡ଼ିଶା ଘରକୁ ଗୁଲି ଯାଇଥିବେ ।

ମମତା : ଏତେ ଘଡିରେ କୋଉ ପଡ଼ିଶା ଘରକୁ ଯିବେ ? ଘଡି ପରା ଏଗାରଟା ପନ୍ଦର ହେଲଣି ।

କନକ : (ପ୍ରବେଶି) କିରେ ମାମୁ କୁଆଡ଼େ ଗଲ ? କାଇଁ କୋଉଠିତ ନାହିଁ ।

ଅଥଚ : ମାମୁ ତାହେଲେ କ'ଣ ଆସି ନାହାଁନ୍ତି ?

କନକ : ସିଏତ ଆସିଥିଲେ ଘରେ ଥାଆନ୍ତା ।

ମମତା : ଆମ ଘର ତାହେଲେ କିଏ ଖୋଲିଲା ?

ଅଥଚ : ଶ୍ୱେର ପଶିଥିଲା କି ?

କନକ : (ଚମକି ପଡ଼ି) ଏଁ କ'ଣ କହିଲୁ ? ଶ୍ୱେର ?

ମମତା : (କନକଙ୍କୁ କୁଣ୍ଢେଇ ଧରିଲା) ବୋଉ ମତେ ଡର ଲଗୁଚି ।

କନକ : ରହ ଏମିତି ଡରୁଚୁ କାଇଁକି ? ମୁଁ ଅଛି, ଅଥଚ ଅଛି ।

ଅଥଚ : ଏମିତି ଗୁନିଆଁ କାଇଁକି ହଉଚୁ ? ଶ୍ୱେର ପଶିଥିଲା ଯଦି କୁଆଡ଼େ ଗଲା ? ସିଆଡ଼େ ତ ବାଟ ନାହିଁ । ଗଲେ ଏଇବାଟେ ଯିବା କଥା । ଏ ବାଟେ ତ ଆମେ ଆସିଲେ ।

କନକ : ଚୋର ତାହେଲେ ଆମ ଘର ଭିତରେ କୋଉଠି ଅଛି ।

ମମତା : ( କନକକୁ ଜାବୁଡ଼ି ଧରି, ଭୟରେ ଥରିଲା )

ଅଥଚ : ତୁ ପରା ଦେଖିଛୁ ସେ ଘରେ କେହି ନାହିଁ ?

କନକ : ନା, କେହି ନାହିଁ ।

ଅଥଚ : ମମତା ! ତୁ ପରା ପାଇଖାନା ଘର ଦେଖିଛୁ ?

ମମତା : ନା, ପାଇଖାନା ଘରେ କେହି ନାହିଁ ।

ଅଥଚ : ବୋଉ ! ତୁ ରୋଷେଇ ଘର ଦେଖିଲୁଣି ?

କନକ : ନା ।

ଅଥଚ : ଚୋରଟା ନିଶ୍ଚୟ ରୋଷେଇ ଘରେ ଲୁଚିଛି । ତମେ ସବୁ ଏଇଠି ଠିଆ ହୁଅ, ମୁଁ ରୋଷେଇ ଘରଟା ଦେଖୁଛି ।

କନକ : (ଅଥଚର ହାତ ଧରି ପଛକୁ ଟାଣିଲେ) ନା, ସେମିତି ଖାଲି ହାତରେ ଯାଆନା । ଆଜି କାଲିର ଚୋରକୁ ମୋଟେ ବିଶ୍ୱାସ ନାହିଁ । ଛୁରା, ବନ୍ଧୁକ ବୋମା ଧରିକି ଆସୁଚନ୍ତି ।

ଅଥଚ : ସେମିତିଆ ଚୋର ହୋଇଥିଲେ ସିଏ ଆମକୁ ଡ଼ରିକି ଲୁଚିଥାନ୍ତା କାହିଁକି ? ସିଏ ବନ୍ଧୁକ ଦେଖାଇ ଥିଲେ ଆମେ ଜୀବନ ବିକଳରେ ଚୁପ୍ ଚାପ୍ ହାତ ଟେକି ଦେଇଥାନ୍ତେ । ଏ ଚୋର ଆମକୁ ଡରୁଚି ମାନେ ତା ହାତ ଆମ ହାତ ପରି ଖାଲି । ତୁମେ ରୁହ ମୁଁ ଦେଖୁଛି ।

କନକ : ( ଠେଙ୍ଗାଟାଏ ଆଣି ) ନେ, ଏଇଟାକୁ ନେଇକି ଯା । ଖୁବ୍ ହୁସିଆରି ଯିବୁ ।

ମମତା : ନା ଭାଇ ! ତୁ ଏକା ଯାଆନା ।

କନକ : ଚାଲ୍ ମୁଁ ତୋ ସାଙ୍ଗରେ ଯିବି ।

ମମତା : ନାଇଁ ବୋଉ ! ତୁ ମତେ ଛାଡ଼ିକି ଯାଆନା । (ଅଧିକ ନିବିଡ଼ ଭାବେ କନକକୁ ଜାବୁଡ଼ି ଧରିଲା । )

ଅଥଚ : ନା, ତମେ କେହି ଆସିବା ଦରକାର ନାହିଁ । ମୁଁ ଦେଖୁଚି । ( ଖୁବ୍ ସନ୍ତର୍ପଣରେ ବାଡ଼ିଟାକୁ ବୁଲାଇ ବୁଲାଇ ଗୋଟିଏ

ଗୋଟିଏ ପାଦ ଆଗକୁ ଆଗକୁ ପକାଇଲେ । କନକ ଓ ମମତା ଭୟରେ ଥରୁଥାନ୍ତି ।)

କନକ : ଦୂରେଇକି ଠିଆ ହୋଇକି ଦେଖିବୁ ।

ଅଥଚ : (ଘର ଭିତରକୁ ଗଲେ ।)

ମମତା : (ଝରକା ଆଡ଼କୁ ଅନେଇ) ବୋଉ ! ଅନେଇଁଲୁ ସେଇଟା କ'ଣ ?

କନକ : କାଇଁ ? କୋଉଟା ?

ମମତା : ସେଇ ଝରକା ସେପଟରେ ।

କନକ : (ଝରକା ପାଖକୁ ଯାଇ ) କାଇଁ କେହି ନାହିଁ ତ ?

ଅଥଚ : (ପ୍ରବେଶ କରି) ନାଇଁ, ସେଷେଇ ଘରେ କେହି ନାହିଁ ।

କନକ : ତା ହେଲେ କ'ଣ ଚୋର ଆମ ଘରୁ ଚୋରିକରି ପଳେଇଚି ?

ଅଥଚ : ତା ବି ହୋଇପାରେ । ହୁଏତ ଆମେ ଫୁଲକୁଣ୍ଡ ତଳେ ଚାବିକାଠି ଥୋଇବା ବେଳେ କିଏ ମାର୍କ କରିଛି, ଆଉ ଆମେ ବଜାରକୁ ଯିବାପରେ ତାଲା ଫିଟାଇ ଘରେ ପଶିଚି ।

ମମତା : ହେଇ ଏଇଠି ତାଲା ଆଉ ଚାବିକାଠି ଥୁଆ ହେଇଚି ।

( ଚାବିକାଠି ଓ ତାଲା ଧରିବାକୁ ଯାଉଥିଲେ । )

ଅଥଚ : ନା, ସେ ତାଲା କି ଚାବିକାଠି କିଛି ଛୁଇଁନା । ସେଥିରେ ଚୋରର ଫିଙ୍ଗର ପ୍ରିଣ୍ଟ ଥିବ ।

କନକ : ଆମ ଘରେ ଯଦି ଚୋର ପଶିଥିବ ତାହାଲେ ନିଶ୍ଚୟ କିଛି ଜିନିଷ ଚୋରିକରି ନେଇଥିବ । ସବୁ ଜିନିଷ ଠିକ୍‌ଠାକ୍ ଅଛି କି ନାହିଁ ଦେଖ ।

ମମତା : ଏ ଘରେ ତ ସବୁ ଜିନିଷ ଠିକ୍ ଅଛି । ଟିଭିଟା ସେଇଠି ସେମିତି ଅଛି । ଟେପ୍‌ରେକର୍ଡ଼ରଟା ବି ତ ଅଛି ।

କନକ : ସେ ଘରେ ଟଙ୍କା ଆଉ ସୁନା ଗହଣା ଥିଲା, ମୁଁ ଯାଇଁକି ଦେଖେ ।

( ଖୁବ୍ ତରବର ହୋଇ ସେ ଘରକୁ ଚାଲିଗଲେ । )

ମମତା : ଭଇ ! ରଥ ମଉସାଙ୍କ ଘରକୁ ଯାଇ ଥାନାକୁ ଗୋଟେ ଟେଲିଫୋନ୍ କରି ଦେ । ଚୋରି କଥାଟା ପୋଲିସ୍‌କୁ ଜଣାଇବା କଥା ।

ଅଥଚ : ଚୋର ତ ଗଲାଣି, ପୋଲିସ୍‌କୁ ଏତେ ଡେରିରେ ଡ଼ାକିଲେ କ'ଣ ହେବ ?

ମମତା : ତା ବୋଲି ଆମ ଘରେ ଚୋର ପଶିଥିଲା, ପୋଲିସ୍‌କୁ ଜଣାଇବା ନାହିଁ ।

ଅଥଚ : ହଜି ଯାଇଥିବା ମଣିଷକୁ ଯୋଉ ପୋଲିସ୍ ଖୋଜି ପାରୁ ନାହିଁ, ସିଏ ଲୁଚିଥିବା ଚୋରକୁ କ'ଣ ଖୋଜି କି ପାରିବ ?

କନକ : (ପ୍ରବେଶି) ନା, ସବୁ ଠିକ୍ ଅଛି । କିଛି ଚୋରି ଯାଇନାହି ।

ଅଥଚ : ଆଶ୍ଚର୍ଯ୍ୟ କଥା । ଚୋର ତାହାଲେ ଆମ ଘର ଖୋଲିଲା କାହିଁକି ?

ମମତା : ମୁଁ ଭାବୁଛି ଚୋର ଚୋରି କରିବ ବୋଲି ଆମ ଘର ଖୋଲିଥିଲା କିନ୍ତୁ ସେ ଖୋଲିବା ସାଙ୍ଗେ ସାଙ୍ଗେ ଆମେ ଆସିଗଲେ । ଆମକୁ ଦେଖି ଚୋର ପଳେଇ ଗଲା । କିଛି ଚୋରି କରିବାର ସୁଯୋଗ ହୁଏତ ପାଇନାହିଁ ।

କନକ : ହଁ, ସେଇଆ ହେଇଥିବ ।

ଅଥଚ : ଛାଡ଼ ସେକଥା । ଆମ ଘରୁ ତ କିଛି ଚୋରି ଯାଇନେଇଁ, ସେ ବିଷୟରେ ଆଉ ଆଲୋଚନା କରି କିଛି ଲାଭ ନାଇଁ । ( ହାଇ ମାରିଲା ) ହୋଟେଲରେ ଖାଇବାଟା ପୋର୍ ହୋଇ ଗଲା । ମତେ ନିଦ ଲାଗିଲାଣି, ମୁଁ ଶୋଉଚି । (ସୋଫା ଉପରେ ଶୋଇ ପଡିଲା ।)

କନକ : କିରେ ସେଠି କ'ଣ ଶୋଇଲୁ । ଧର ଜିନିଷଗୁଡ଼ାକ ସେ ଘରକୁ ଧର ।

ଅଥଚ : ଏଗୁଡ଼ା ଏଠି ପଡ଼ିଥାଉ । ମତେ କ୍ଲାନ୍ତ ଲାଗିଲାଣି ମୁଁ ଯାଉଚି ଶୋଇବି । (ପୁଣି ହାଇ ମାରିଲା ଏବଂ ଆର ଘରକୁ ଚାଲିଗଲା)

କନକ : ତୁ ମାଆ ଧଇଲୁ, ଧର ଏ ଜିନିଷଗୁଡ଼ାକ ସେ ଘରକୁ ନେବା ।

ମମତା : ମତେ ବି କ୍ଳାନ୍ତ ଲଗିଲଣି । ମୁଁ ଯାଉଚି ଶୋଇବି । ଜିନିଷ ଗୁଡ଼ାକ ଏଇ ଘରେ ପଡ଼ିଥାଉ କାଲି ସେ ଘରକୁ ନେବା ।

(ହାଇ ମାରିଲା ଓ ଗ୍ଲିଗଲା)

କନକ : ହଉ ତୁ ଯା । ମୁଁ ଏଇ ଘରେ ଖଟ ଉପରେ ଶୋଇବି ।
(ଘରେ ଏଠିସେଠି ପଡ଼ିଥିବ! ଜିନିଷକୁ ସଜାଡ଼ିକି ଟିପୟ ଉପରେ ଓ ସୋଫା ଉପରେ ଥୋଇଲା କନକ । ଖଟଉପରେ ଗୁଡାହୋଇ ପଡ଼ିଥିବା ବିଛଣାକୁ ବିଛେଇଲା । କବାଟ ବନ୍ଦ କଲା! । ଲାଇଟ୍ ବନ୍ଦ କରି ଖଟଉପରେ ଶୋଇଲା । କିଛି ସମୟ ଅନ୍ଧାରରେ କଟିଲା । ଗ୍ରିଆଡ଼ ନିସ୍ତବ୍ଧ । କାନ୍ଥ ଘଣ୍ଟାରେ ଟିକ୍ ଟିକ୍ ଶବ୍ଦ ସୃଷ୍ଟି ହେଲା । ସେଇ ଅନ୍ଧାର ଭିତରେ ଖଟତଳୁ ବାହାରିଲେ ଅବନି । ଲାଇଟି ଜଳାଇଲେ । କନକ ନିଦରେ ଶୋଇଥିଲା । ତା ପାଟିରେ ହାତ ଦେଇ ବନ୍ଦ କଲେ ଅବନି ।)

କନକ : ( ପାଟିକୁ ଅବନି ଗ୍ପି ଧରି ଥିବାରୁ ଗ୍ୱେର ଗ୍ୱେର ବୋଲି ଚିତ୍କାର କରିବାକୁ ଚେଷ୍ଟା କରି ବିଫଳ ହେଲା କନକ )

ଅବନି : (ଗ୍ପା କଣ୍ଠରେ ।) ମୁଁ ଚୋର ନୁହଁ, ତୁମ ସ୍ୱାମୀ ଅବନି ।

କନକ : ଭୁ...... ଭୁ...... ଭୁ...... ଭୁତ ।

ଅବନି : ମୁଁ ଭୁତ ନୁହଁ ମଣିଷ । ମୁଁ ମରିନାହିଁ ବଞ୍ଚିଛି ।

କନକ : (ତଥାପି ଥରୁଥାଏ । ସେଇ ବିଛଣା ଉପରେ ଉଠି ବସିଲା ।)

ଅବନି : ତୁମେ ଭୟ କରନା ଅଥଚ ବୋଉ ! ମୁଁ ଫେରି ଆସିଛି ।

କନକ : ତୁମେ ଆଜି ଯାଏ କୋଉଠି ଥିଲ ?

( ଦୁହେଁ ପରସ୍ପରକୁ କୁଣ୍ଢାଇ ଧରିଲେ । )

ଅବନି : ମୁଁ ସ୍ମରଣ ଶକ୍ତି ହରଇ ଥିଲି ।

କନକ : ସ୍ମରଣ ଶକ୍ତି ହରଇ ଥିଲ ?

ଅବନି : ହଁ, ଅଥଚ ବୋଉ ! ଇଏ ଗୋଟେ ରୋଗ । ମୁଁ କେମିତି ଏଠୁ

ଗଲି, କୋଉଠି କ'ଣ କଲି, ମୋର କିଛି ମନେ ନାହିଁ । ଡାକ୍ତର କହିଲେ ଏ ରୋଗ ହଠାତ୍ ହୁଏ । ଏ ରୋଗ ହେଲେ ମଣିଷ ସ୍ମରଣ ଶକ୍ତି ଭୁଲି ଯାଏ । ମୁଁ ସେଦିନ ଘରୁ ସକାଳ ଭ୍ରମଣରେ ରାସ୍ତାକୁ ଆସିଥିଲି । ମୋର କେବଳ ଏତିକି ମନେ ପଡ଼ୁଛି ।

କନକ : ତାପରେ ତୁମେ କୁଆଡ଼େ ଗଲ ?

ଅବନି : ମୁଁ କେମିତି ଭେପାଲରେ ପହଞ୍ଚିଲି ମୋର କିଛି ମନେ ନାହିଁ ।

କନକ : ଭେପାଳ ?

ଅବନି : ମୁଁ ଭେପାଳ ଡାକ୍ତରଖାନାରେ ଥିଲି । ଏବେ ଭଲ ହେବାରୁ ଆସିଲି ।

କନକ : ତୁମକୁ କିଏ ଡାକ୍ତରଖାନାକୁ ନେଲା ?

ଅବନି : ଡାକ୍ତର କହୁଥିଲେ, ଭେପାଳ ରାସ୍ତାରେ ମୁଁ ଏଣେ ତେଣେ ବୁଲୁଥିବା ବେଳେ ଜଣେ ଶିଳ୍ପପତିଙ୍କ କାର୍ ଆଗରେ ପଡିଲି । ସେଇ ଶିଳ୍ପପତି ମୋତେ ଡାକ୍ତରଖାନା ନେଲେ । ଡାକ୍ତର ପରୀକ୍ଷା କରି ଦେଖିଲେ ମୋର ବିଶେଷ କିଛି କ୍ଷତି ହୋଇ ନାହିଁ । କିନ୍ତୁ ମୋର ସ୍ମରଣ ଶକ୍ତି ନାହିଁ । ସେହି ଦିନଠୁ ମୁଁ ଭେପାଳ ଡାକ୍ତରଖାନାରେ ଚିକିତ୍ସିତ ହେଉଥିଲି । ମୋ ରୋଗ ଭଲ ହୋଇ ଯିବାରୁ ସେମାନେ କାଲି ମୋତେ ଛାଡ଼ି ଦେଲେ ।

କନକ : ( ସକ୍ ସକ ହୋଇ କାନ୍ଦିଲେ )

ଅବନି : ତୁମେ କାନ୍ଦନା ଅଥଚ ବୋଉ ! ପିଲମାନେ ଉଠିବେ ।

କନକ : (କାନ୍ଦ ରୁପି) ଆମେ ଭବିଲୁ......

ଅବନି : ମୁଁ ମରିଯାଇଛି । ଏଇଆ ନା ?

କନକ : (ପୁଣି କାନ୍ଦିଲେ)

ଅବନି : ତୁମେ ସବୁ ବଜାର ଯାଇଥିବା ବେଳେ ମୁଁ ଘରେ ପହଞ୍ଚିଲି । ଫୁଲକୁଣ୍ଡ ତଳୁ ଚାବିକାଠି ନେଇ ଘର ଖୋଲି ଦେଖିଲି ମୋ

ଫଟରେ ଫୁଲମାଳ ଦିଆ ଯାଇଛି । ମୁଁ ଜାଣିଲି, ତୁମେ ଧରି ନେଇଛ ମୁଁ ମୃତ ।

କନକ : (କାନ୍ଦ କାନ୍ଦ ସ୍ୱରରେ) ଆମେ ତୁମକୁ ଅନେକ ଖୋଜିଲୁ । ରେଡ଼ିଓ, ଟିଭି, ଖବରକାଗଜ ସବୁଠି ବିଜ୍ଞାପନ ଦେଲୁ । ଥାନାରେ ଏତେଲ ଦେଲୁ । କୋଉଠୁ କିଛି ଖବର ପାଇଲୁ ନାହିଁ ।

ଅବନି : କିନ୍ତୁ ମୁଁ ମରିଯାଇଛି ବୋଲି······

କନକ : ଦିନେ ଖବରକାଗଜରେ ଗୋଟିଏ ଅଚିହ୍ନା ଶବର ଛବି ବାହାରିଲା । ସେ ଶବର ପୋଷାକ, ଚପଲ, ଘଣ୍ଟା, ଚଷମା ତୁମ ପୋଷାକ, ଚପଲ, ଘଣ୍ଟା, ଚଷମା ସହିତ ମେଳ ଖାଉଥିଲା । ମୁହଁଟା ଦୁର୍ଘଟଣାରେ ଛିନ୍ନଛତ୍ର ହେଇ ଯାଇଥିଲା । ମଦନ, ଅଥଚ ଆଉ ମମତା ଯାଇ ସେ ଶବକୁ ତୁମର ଶବ ବୋଲି ଚିହ୍ନଟ କଲେ ।

ଅବନି : ମୋ ଶ୍ରାଦ୍ଧକ୍ରୀୟା ସରିଛି ?

କନକ : (ପୁଣି କାନ୍ଦି ଉଠିଲେ) ତୁମର ଛ'ମାସିଆ ଶ୍ରାଦ୍ଧ ମଧ୍ୟ ସରିଛି ।

ଅବନି : (ଦୀର୍ଘ ନିଃଶ୍ୱାସ ପକାଇ) ଛ'ମାସିଆ ?

କନକ : ମମତାର ବାହାଘର ପାଇଁ ଗଗନବାବୁ ବାଧ୍ୟ କଲେ । ତେଣୁ······

ଅବନି : ବାହାଘର କେବେ ?

କନକ : ଆଉ ପାଞ୍ଚ ଦିନ ଅଛି । ଅଥଚ ତୁମ ଅଫିସ୍‌ରେ ତୁମ ଜାଗାରେ ଚାକିରି ପାଇଛି । ତମେ ବସ, ମୁଁ ପିଲମାନଙ୍କୁ ନିଦରୁ ଉଠାଏ । (ଯିବାକୁ ଉଦ୍ୟମ କଲେ)

ଅବନି : (କନକକୁ ଅଟକାଇ) ନା, ସେମାନଙ୍କୁ ଉଠାନା । ସେମାନେ ମୋତେ ଦେଖିବା ଠିକ୍ ହେବ ନାହିଁ ।

କନକ : ତୁମକୁ ଦେଖିଲେ ସେମାନେ ଭରି ଖୁସି ହେବେ ।

ଅବନି : ନା ଅଥଚ ବୋଉ ! (ଦୁଃଖ କରି)

କନକ : (କାନ୍ଦ କାନ୍ଦ ହୋଇ) ତୁମେ ସେମାନଙ୍କୁ ଭୁଲ ବୁଝନା ! ତୁମେ ଗଲି ଗଲାପରେ ପରିସ୍ଥିତି ଯାହାହେଲା, ସେଥିରେ ଆମ ସମସ୍ତଙ୍କର ବୁଦ୍ଧି ହଜିଗଲା । ଘରେ ଅଭାବ । ତୁମକୁ ଖୋଜିବାରେ ଅନେକ ଧାର ଉଧାର । ଗଗନବାବୁ ବାରମ୍ବାର ଧମକାଇଲେ ବାହାଘର ନକଲେ ଚାଙ୍କ ପୁଅକୁ ସିଏ ଅନ୍ୟଠି ବାହା ଦେବେ । ସେ ଶବଟା ଠିକ୍ ତୁମ ପରି ଦିଶୁଥିଲା ।

ଅବନି : ମୁଁ ସେମାନଙ୍କୁ କି ତୁମକୁ କାହାକୁ ଭୁଲ୍ ବୁଝୁ ନାହିଁ । କିନ୍ତୁ ତୁମେ ପରିସ୍ଥିତିକୁ ଠିକ୍ ଭାବେ ନବୁଝିଲେ ଏ ପରିବାରରେ ପୁଣି ଗୋଟେ ଝଡ଼ ଉଠିବ ।

କନକ : ପୁଣି କି ଅନିଷ୍ଟ ହବ ?

ଅବନି : ଅଥଚ ରିହାବିଲିଟେସନ୍ ସ୍କିମ୍‌ରେ ଚାକିରି ପାଇଛି ?

କନକ : ହଁ ।

ଅବନି : ମୋ ଡ଼େଥ୍ ସାର୍ଟିଫିକେଟ୍ ସରକାରଙ୍କୁ ଦେଇଥିବ ?

କନକ : ଦେଇଛି ।

ଅବନି : ଯେତେବେଳେ ସମସ୍ତେ ଜାଣିବେ ମୁଁ ଜୀବିତ, ଯେତେବେଳେ ଜାଲ୍ କରିବା ଅପରାଧରେ ଅଥଚ ଜେଲ୍ ଯିବ ।

କନକ : (ଭୟ ପାଇ) ଜେଲ୍ ଯିବ ?

ଅବନି : ଖାଲି ଜେଲ୍ ଯିବନେଇଁ, ଚାକିରି ଯିବ । ଗ୍ରୁପ୍ ଇନ୍‌ସୁରନ୍‌ସ ଆଉ ଗ୍ରାଚୁଇଟି ବାବଦକୁ ଯେତେ ଟଙ୍କା ପାଇଛ ସରକାରଙ୍କୁ ସବୁ ଫେରଇବାକୁ ପଡ଼ିବ ।

କନକ : ତମେ ଏସବୁ କ'ଣ କହୁଛ ?

ଅବନି : ମମତାର ବାହାଘର ମଧ୍ୟ ଭାଙ୍ଗିଯିବ ?

କନକ : ବାହାଘର କାହିଁକି ଭାଙ୍ଗିଯିବ ?

ଅବନି : ଗଗନବାବୁ ଯେତେବେଳେ ଜାଣିବେ ମୁଁ ବଞ୍ଚି ଥାଉ ଥାଉ ଜାଲ୍ କରଯାଇ ଏତେ କାରସାଦି କର ଯାଇଛି, ସିଏ ହୁଏତ ଧାରଣା କରିବେ ଏ ପରିବାରର ଚରିତ୍ର ଭଲ ନୁହଁ ।

ଆବଶ୍ୟକ ହେଲେ ଏମାନେ ସବୁ ପ୍ରକାର ଜାଲ୍ କରି ପାରିବେ ।

କନକ :ସିଏ କ'ଣ ବୁଝିବେ ନାହିଁ, ପରିସ୍ଥିତି ଯୋଗୁ ଏମିତି ହେଲା ।
ଆମେ ଜାଣିଶୁଣି ଏ ଭୁଲ୍ କରି ନାହୁଁ ବୋଲି ?

ଅବନି : ନା । ପରିସ୍ଥିତି ବୁଝିବାକୁ କେହି ଚେଷ୍ଟା କରିବେ ନାହିଁ ।

କନକ : ତାହେଲେ କ'ଣ କରିବା ?

ଅବନି : ମୁଁ ଏଠିକି ଯେମିତି ଚୁପ୍ ଚାପ୍ ଆସିଛି, ସେମିତି ଚୁପ୍ ଚାପ୍ ଫେରିଯିବି ।

କନକ : ନା, ତୁମକୁ ମୁଁ କୌଣସି ମତେ ଛାଡ଼ିବି ନାହିଁ ।

ଅବନି : ତୁମେ ଅବୁଝା ହୁଅନା, ପରିସ୍ଥିତି ବୁଝିବାକୁ ଚେଷ୍ଟାକର ।

କନକ : ମୋର କିଛି ବୁଝିବା ଦରକାର ନାହିଁ, ଜଣେ ନାରୀପାଇଁ ତା ସ୍ୱାମୀ ତା'ର ସବୁକିଛି ।

ଅବନି : ଜଣେ ଚାଲିଗଲା ପରେ ତା ସ୍ଥାନ ସବୁ ଦିନ ଖାଲି ରହେ ନାହିଁ । ନିର୍ଦ୍ଦିଷ୍ଟ ସମୟ ଭିତରେ ନ ଫେରିଲେ ସେ ସ୍ଥାନ ପୂରଣ ହୋଇଯାଏ ।

କନକ : ସାବିତ୍ରୀ ତାଙ୍କର ନିଷ୍ଠା ଆଉ ବୁଦ୍ଧି ବଳରେ ନିଜ ମୃତ ସ୍ୱାମୀର ଜୀବନ ଯମ ହାତରୁ ଛଡ଼ାଇ ଆଣିଥିଲେ । ମୋଇ ନାରୀ ମୁଁ । କେମିତି ଏତେ ଦିନ ପରେ ଫେରି ପାଇଥିବା ସ୍ୱାମୀଙ୍କୁ ହାତରୁ ଛାଡ଼ି ଦେବି ?

ଅବନି : ମୋ ପରିବାର ପାଇଁ ମୋର ବଞ୍ଚିବା ଅପେକ୍ଷା ମରିବା ବର୍ତ୍ତମାନ ଅଧିକ ଶ୍ରେୟ ।

କନକ : ତୁମେ ଘରୁ ଚାଲି ଯିବା ପରେ ଝଡ଼ ଉଠିଥିଲା, ସେ ଝଡ଼କୁ ଆମେ ଯେମିତି ସହିଥିଲୁ, ଆଜି ଯଦି ତୁମେ ଫେରିବା ଯୋଗୁ ଝଡ଼ ଉଠେ ଆମେ ସେମିତି ସହିବୁ ।

ଅବନି : ନା, ମୁଁ ଏଠି ରହି ଜାଣି ଜାଣି ମୋ ପରିବାରକୁ ଆଉ ଗୋଟିଏ ପ୍ରଳୟଙ୍କରୀ ଝଡ଼ ମୁହଁକୁ ଠେଲି ଦେଇ ପାରିବି

ନାହିଁ । ବାପା ହୋଇ ପୁଅ ହାତରେ ଲୁହା ଶିକୁଳି ପିନ୍ଧାଇ ପାରିବି ନାହିଁ ।

କନକ : ତୁମେ ଯଦି ନରହିବ ମୁଁ ତୁମ ସାଙ୍ଗରେ ଯିବି ।

ଅବନି : ନା, ତୁମେ ଅବୁଝା ହୁଅନା । ମୁଁ ଫେରିଗଲେ ସବୁକଥା ଆଗପରି ସ୍ୱଭାବିକ୍ ରହିବ । ସମସ୍ତେ ଜାଣନ୍ତି ମୁଁ ମୃତ । କିନ୍ତୁ ତୁମେ ଯଦି ମୋ ସାଙ୍ଗରେ ଘରଛାଡ ତାହେଲେ ପିଲମାନେ ତୁମକୁ ଖୋଜିବେ । ଘରେ ପୁଣି ଅଶାନ୍ତି ସୃଷ୍ଟି ହେବ । ମମତାର ବାହାଘର ବନ୍ଦ୍ ହେଇଯିବ ।

କନକ : ( କାନ୍ଦିକାନ୍ଦି) କିନ୍ତୁ ମୁଁ ଏମିତି ବିଧବା ସାଜି ... ... ...

ଅବନି : ଜୀବନଟା ଅଭିନୟ । ଏ ସଂସାର ଗୋଟେ ବିରଟ ମଞ୍ଚ । ଏଠି ତୁମେ ବିଧବାର ଅଭିନୟ କରିବ, ମୁଁ ଏଠୁ ଦୂରରେ ଯାଇ ଅନ୍ୟ କେଉଁଠି ମୃତ ଲେକର ଅଭିନୟ କରିବି । ଆମ ପିଲ ମାନଙ୍କର ମଙ୍ଗଳ ପାଇଁ ଆମେ କ'ଣ ଜୀବନର ଅବଶିଷ୍ଟ ଦିନ କେଇଟା ଏମିତି ଅଭିନୟ କରି ବିତେଇ ଦେଇ ପାରିବା ନାହିଁ ?

କନକ : ( କେବଳ କାନ୍ଦିଲେ )

ଅବନି : ତୁମେ ଏତେ ଟତିରେ କାନ୍ଦନା ଅଥଚ ବୋଉ ! ତୁମର କାନ୍ଦଣା ଶୁଣି ହୁଏତ ପିଲମାନଙ୍କର କି ପଡ଼ିଶା ଲେକ-ମାନଙ୍କର ନିଦ ଭଙ୍ଗିଯିବ । ନିଜକୁ ଆୟତ କର ।

କନବ : (କାନ୍ଦି କାନ୍ଦି) ଇଏ କ'ଣ ତୁମର ଶେଷ ନିଷ୍ପତ୍ତି ?

ଅବନି : ମୁଁ ଆଜି ଯେଉଁ ପରିସ୍ଥିତିରେ ପଡ଼ିଛି ତାର ଅନ୍ୟ କିଛି ପରିଣତି ହୋଇ ନପାରେ । ଏ ଘରେ ମୋର ଆଉ ସ୍ଥାନ ନାହିଁ । ତୁମେ ଥାଅ, ମୁଁ ଯାଉଛି ।

କନକ : ( ଅବନିଙ୍କୁ ଜାବୁଡ଼ି ଧରିଲେ ) ଏ ଶୀତ ରତିରେ ତୁମେ କୁଆଡ଼େ ଯିବ ? କେଉଁଠି ରହିବ ?

ଅବନି : ଯାହାର ମନ ଭିତରେ ନିଆଁ ଲଗିଛି ତାକୁ ବାହାରର ଥଣ୍ଡା କ'ଣ କରିବ ?

( ନିଜକୁ କନକଠାରୁ ମୁକୁଳାଇବାକୁ ଚେଷ୍ଟା କଲେ )
ତୁମକୁ ପିଲମାନଙ୍କର ଦାୟିତ୍ୱ ଲଗିଲ ।

କନକ : ନା, ତୁମେ ଯାଅନା ।

ଅବନି : ଯିବାଟା ଯେତେବେଳେ ନିର୍ଦ୍ଧିତ ଡ଼େରିକରି ଲଭ ନାହିଁ ।
ବରଂ ବିପଦର ସମ୍ଭାବନା ଅନେକ ।
( କନକକର ହାତରୁ ନିଜକୁ ମୁକୁଳାଇ ଅବନି ପଛକୁ ଗ୍ରହିଁ ଚାହିଁ ଚାଲିଗଲେ । କନକ ବଡ ପାଟିରେ ଚିତ୍କାର କରି କାନ୍ଦି ଉଠିଲେ । କନକର କାନ୍ଦଣା ଶୁଣି ଅଥଚ ଓ ମମତା ନିଦରୁ ଉଠି ଧାଇଁ ଆସିଲେ । )

ଅଥଚ }
ମମତା } (କନକକୁ ଧରି) କ'ଣ ହେଲ ? କ'ଣ ହେଲା ବୋଉ ?

କନକ : ( କିଛି ନକହି ସେମିତି କାନ୍ଦିବାରେ ଲଗିଲେ )

ଅଥଚ : ଏ ଘରଟା କ'ଣ ମେଲ ହେଇଚି ? ବୋଉ ! ବୋଉ !
( କନକକୁ ହଲାଇ ଦେଲା । କିନ୍ତୁ କନକ କେବଳ ସେମିତି କାନ୍ଦୁଥିଲେ । )

ମମତା : ବୋଉ !

ଅଥଚ : ଚୋର ପଶିଥିଲା କି ?

ମମତା : କିଛି କାହିଁକି କହୁନଉଁ ବୋଉ ? ( କାନ୍ଦକାନ୍ଦ ହୋଇ )
ବୋଉ ! ତୋର ଇଏ କ'ଣ ହେଲା ବୋଉ । ତୁ ଏମିତି କାନ୍ଦୁଚୁ କାଇଁକି ?

ଅଥଚ : ବୋଉ ! ବୋଉ ! କ'ଣ ହେଇଚି ବୋଉ !
( କନକ କିଛି ନକହି କେବଳ କାନ୍ଦୁଥିଲେ । ଅଥଚ ଓ ମମତା ବାରମ୍ବାର ପଚାରୁ ଥିଲେ— କ'ଣ ହେଲା ? କାଇଁକି କାନ୍ଦୁଚୁ ବୋଉ ! କନକ କିଛି ନକହି ସେମିତି କାନ୍ଦୁଥିଲେ । ଧୀରେ ଧୀରେ ମଞ୍ଚ ଅନ୍ଧକାର ହେଲା । )





## ଆନନ୍ଦ ଚନ୍ଦ୍ର ପହିଙ୍କ ଦ୍ୱାରା ରଚିତ
## ବେତାର, ଦୂରଦର୍ଶନ ଓ ମଞ୍ଚ ନାଟକ

- ରେଖାଚିତ୍ର
  [ଆକାଶବାଣୀ ବାର୍ଷିକ ପୁରସ୍କାର ପ୍ରଦାନ ଉତ୍ସବ ୧୯୯୨ରେ ମେରିଟ୍ ସାର୍ଟିଫିକେଟ୍ ପ୍ରାପ୍ତ]
- ଭାଙ୍ଗି ପଡୁଥିବା ଭୂମି
  [୧୯୯୨-୯୩ ମସିହା ସର୍ବ ଭାରତୀୟ ବେତାର ନାଟକ ପ୍ରତିଯୋଗିତାରେ ଦ୍ୱିତୀୟ ସର୍ବଶ୍ରେଷ୍ଠ ନାଟକ ଭାବେ ପୁରସ୍କୃତ।]
- ଆଲୋକର ଅନ୍ଧକାର
- ଅନେକ ମୁହଁ
- ଅନ୍ୟ ଅରଣ୍ୟ
- ହଜି ଯାଉଥିବା ମଣିଷ
- ଯନ୍ତ୍ରା
- ନୀଳ କଇଁ
- ଖାନ୍ତଲାସ
- ଚିଠି
- ଆକ୍ସିଡେଣ୍ଟ
- ବୁଢୀଆଣୀ ଜାଲ
- ଶୋଷ
- ଆନୁଆଲ୍ ଫଙ୍କସନ୍
- ସ୍ୱାସ୍ଥ୍ୟ ନିବାସ
- ଭୟ
- ଝଡ ଗ୍ରସ୍ତ ଦୁଇଟି ଫୁଲ
- ଅମୁହାଁ ଦେଉଳ
- ମୁହଁ ସଂଜ
- କାଲି ଆଜି କାଲି
- ପ୍ରତୀକ୍ଷାରେ ପରୀକ୍ଷିତ
- ଆଗାମୀ ସୂର୍ଯ୍ୟୋଦୟ
- ପାଇଟି ସୁଅ
- ଅନ୍ୟ ଏକ ସିଦ୍ଧାର୍ଥ
- କୁଣିଆଁ ଝମେଲା
- ଝିଅ ଦେଖା
- ଋତୁ
- ଆକାଶର ରଙ୍ଗ
- ସୂର୍ଯ୍ୟ ପରାଗ
- ଅଧିକାର
- ଅଚିହ୍ନା ଅପରାଧ
- ଦୂର ଦିଗନ୍ତ